# ଇସ୍ତାହାର୍ ରଜତ ଜୟନ୍ତୀ
# ଉଦ୍‌ଯାପନ ଉତ୍ସବ




ସ୍ଥାନ : ଜୟଦେବ ଭବନ (ସୂଚନା ଭବନ)
ତାରିଖ : ୨୫ ଅକ୍ଟୋବର, ୨୦୦୩
ଶନିବାର, ସକାଳ ୧୧ଟା



# 'ଇସ୍ତାହାର' ରଜତଜୟନ୍ତୀ ଉଦ୍‌ଯାପନ ଉତ୍ସବ

**ତାରିଖ : ୨୫।୧୦।୨୦୦୩**

**ସ୍ଥାନ : ଜୟଦେବ ଭବନ, ଭୁବନେଶ୍ୱର**

**ମୁଖ୍ୟ ଅତିଥି ଶ୍ରୀ ବ୍ରଜକିଶୋର ତ୍ରିପାଠୀ, (ଜନ୍ମ ୨୫.୯.୧୯୨୪, ପୁରୀ)**
**(କେନ୍ଦ୍ରମନ୍ତ୍ରୀ, ଇସ୍‌ପାତ, ସ୍ୱାଧୀନ ବିଭାଗ)**

ଉତ୍କଳ ବିଶ୍ୱବିଦ୍ୟାଳୟରୁ ସ୍ନାତକୋତ୍ତର ଡିଗ୍ରୀ ଓ ଆଇନ ଶାସ୍ତ୍ରରେ ସ୍ନାତକ ଡିଗ୍ରୀ ହାସଲ କରି ମଧ୍ୟ ଶ୍ରୀଯୁକ୍ତ ତ୍ରିପାଠୀ କୌଣସି ସ୍ଥିର ବୃତ୍ତି ପ୍ରତି ପ୍ରଲୋଭିତ ନ ହୋଇ ଜନସେବା ମୂଳକ ରାଜନୀତିକୁ ନିଜର ପ୍ରବୃତ୍ତି ଭାବେ ଗ୍ରହଣ କରି ନେଇଛନ୍ତି। ଏକଦା ଛାତ୍ରନେତା ଶ୍ରୀ ତ୍ରିପାଠୀ ଓଡ଼ିଶାରେ ଦ୍ୱିତୀୟ ଇସ୍‌ପାତ କାରଖାନା ପାଇଁ ଏକ ଆନ୍ଦୋଳନର ସୂତ୍ରଧାର ଥିଲେ। ବିଭିନ୍ନ ସମୟରେ ଚୌଦ୍ୱାର, ତାଳଚେର, ବାରଙ୍ଗ, କଟକ, ବାଲେଶ୍ୱର ଓ ପୁରୀଠାରେ ଅବସ୍ଥିତ କାରଖାନାମାନଙ୍କ ଶ୍ରମିକ ନେତା କିମ୍ବା ସଂଗଠନର କର୍ମକର୍ତ୍ତା ଭାବେ ଶ୍ରମିକର ସ୍ୱାର୍ଥ ପାଇଁ ସଂଗ୍ରାମ କରୁଥିଲେ। ଏକଦା ସୋସିଆଲିଷ୍ଟ ପାର୍ଟିର ସଭ୍ୟ ଓ ରାଜ୍ୟ କର୍ମକର୍ତ୍ତା ଭାବେ ଜୟପ୍ରକାଶଜୀଙ୍କ "ସଂପୂର୍ଣ୍ଣ ବିପ୍ଳବ" ଦ୍ୱାରା ପ୍ରଭାବିତ ହୋଇ କଂଗ୍ରେସ ଅପଶାସନ ବିରୁଦ୍ଧରେ ଆନ୍ଦୋଳନ କରି ସେ ଏକାଧିକବାର କାରାବରଣ କରିଥିଲେ। ଇମରଜେନ୍‌ସି ଶାସନ କାଳରେ ଦୀର୍ଘ ଊଣେଇଶି ମାସ ଜେଲରେ ବିତାଇ ୧୯୭୭ ମସିହାରେ ପୁରୀରୁ ପ୍ରଥମେ ରାଜ୍ୟ ବିଧାନ ସଭାକୁ ନିର୍ବାଚିତ ହୋଇ ପରେ ପରେ ୧୯୮୫ ଓ ୧୯୯୦ରେ ସର୍ବମୋଟ ତିନିଥର ଜନତାଦଳର ପ୍ରତିନିଧି ଭାବେ ରାଜ୍ୟ ବିଧାନ ସଭାରେ ପ୍ରତିନିଧିତ୍ୱ କରିଛନ୍ତି। ଜନତା ଦଳର ସରକାରୀ ମୁଖ୍ୟ ସଚେତକ ଭାବେ ରାଜ୍ୟ ବିଧାନ ସଭାରେ ତାଙ୍କର ଦଳୀୟ ନିଷ୍ଠା ଥିଲା ଏକାନ୍ତ ପ୍ରଶଂସନୀୟ। ଶ୍ରୀଯୁକ୍ତ ତ୍ରିପାଠୀ ୧୯୯୧ରେ ଦଶମ ଲୋକସଭାକୁ ନିର୍ବାଚିତ ହୋଇ (୧) ଏଷ୍ଟିମେଟସ୍ କମିଟି (୨) ମାନବ ସଂବଳ ବିକାଶ କମିଟି (୩) ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ କମିଟି (୪) ଇସ୍‌ପାତ ମନ୍ତ୍ରଣାଳୟ ପରାମର୍ଶ ଦାତା କମିଟିର ସଭ୍ୟଭାବେ ନିଜ ଦକ୍ଷତାର ପରିଚୟ ଦେଇଛନ୍ତି। ୧୯୯୮ ଓ ୧୯୯୯ରେ ପୁନଶ୍ଚ ସେହି ପୁରୀ ନିର୍ବାଚନ ମଣ୍ଡଳୀରୁ ବିଜୁଜନତା ଦଳର ସଭ୍ୟଭାବେ ଲୋକସଭାକୁ ନିର୍ବାଚିତ ହୋଇ ସଂପ୍ରତି ଭାରତ ସରକାରଙ୍କ ଇସ୍‌ପାତ ମନ୍ତ୍ରଣାଳୟର ରାଜ୍ୟମନ୍ତ୍ରୀ ଭାବେ ସ୍ୱାଧୀନ ଦାୟିତ୍ୱ ତୁଲାଉଛନ୍ତି।

ରାଜନୈତିକ କର୍ମପ୍ରବାହ ମଧ୍ୟରେ ସମୟର ସ୍ୱଳ୍ପତା ସତ୍ତ୍ୱେ ଶ୍ରୀଯୁକ୍ତ ତ୍ରିପାଠୀ ସାହିତ୍ୟ ଓ ସଂସ୍କୃତି ଅଭିଳାଷୀ ମାନସିକତାର ପରିଚୟ ଦେଇ ବହୁ ଓଡ଼ିଆ ଦୈନିକ ଓ ପତ୍ରପତ୍ରିକାରେ ସ୍ତମ୍ଭକାର ଭାବେ ପ୍ରବନ୍ଧ ପ୍ରକାଶ କରିଛନ୍ତି ଏବଂ 'ଅନୁରାଗ' ନାମକ ଏକ ମାସିକ ପତ୍ରିକାର ସଂପାଦନା କରୁଛନ୍ତି। ଜାତିଗତ ବୈଷମ୍ୟ, ଯୌତୁକ ପ୍ରଥା ଓ ନିଶା ଆସକ୍ତି ବିରୁଦ୍ଧରେ ସେ କ୍ରମାଗତ ସ୍ୱର ଉତ୍ତୋଳନ କରି ଆସିଛନ୍ତି।

ଓଡ଼ିଶାର ହିନ୍ଦ୍ ମଜଦୁର ସଭା ଶ୍ରମିକ ସଂଗଠନର ସଭାପତି ଭାବେ ଜାପାନର ଆନ୍ତର୍ଜାତିକ ଶ୍ରମ ଫାଉଣ୍ଡେସନ ଓ ଜାପାନ ସରକାରଙ୍କ ନିମନ୍ତ୍ରଣ କ୍ରମେ ସେ 'ଶ୍ରମ ସଂପର୍କ ଓ ପରିଚାଳନା' ଶୀର୍ଷକ ପାଠଚକ୍ରରେ ଯୋଗଦେବାକୁ ଜାପାନ ଯାତ୍ରା କରିଥିଲେ। ସେ ମଧ୍ୟ ଓଡ଼ିଶାର ସମବାୟ ଆନ୍ଦୋଳନର ଜଣେ ସକ୍ରିୟ ପ୍ରବକ୍ତା। ପୁରୀର ଏହି ମିଷ୍ଟଭାଷୀ ଓ କର୍ମଚଂଚଳ ବ୍ୟକ୍ତିତ୍ୱ ଓଡ଼ିଶା ସୋସିଆଲିଷ୍ଟ ପାର୍ଟିର ଶ୍ରମ କଲ୍ୟାଣ ସେଲର ଆବାହକ ଦାୟିତ୍ୱଠାରୁ ଭାରତ ସରକାରଙ୍କ ମନ୍ତ୍ରୀ ପରିଷଦର ସଦସ୍ୟ ପଦବୀ ପର୍ଯ୍ୟନ୍ତ ଜୀବନର ଦୀର୍ଘପଥ ଅତିକ୍ରମ କରି ଚାଲିଛନ୍ତି। ସେ ଗତିରେ ବିରତି ନ ଆସୁ-ଚଲାପଥ ଅଧିକରୁ ଅଧିକ କୁସମିତ ହେଉ-ତାହା ହିଁ ଆମର କାମନା।

-ଇସ୍ତାହାର ସଂପାଦନା ମଣ୍ଡଳୀ

# 'ଇସ୍ତାହାର' ରଜତ ଜୟନ୍ତୀ ଉଦ୍‌ଯାପନ ଉତ୍ସବ



ବରେଣ୍ୟ ଅତିଥି :

Professor **Manmath Nath Das,** M. A. (Alld.),
Ph. D.(London), D. Litt. (Utkal)
Formerly Vice-Chancellor, Utkal University, Bhubaneswar, Orissa
Present address : 17, Satyanagar, Bhubaneswar-751007, Orissa,
Now Member of the Parliament (Rajya Sabha) 1998-2004

1. Born in Balasore, Orissa, in January 1926.
2. Obtained M.A Degree in History (First Class) from Allahabad University (1948)
3. Joined Orissa Educational Service (1948).
4. Obtained Ph. D. Degree from London University (1956).
5. Received Rockefeller Fellowship to work as a Research Associate in London University (1960-61).
6. Became Professor & Head of the Department of History of Utkal University (1961).
7. Was deputed by Government of India to Soviet Union to lecture on Indian History in the Universities of Moscow, Leningrad and Tashkent (1962).
8. Obtained D. Litt. Degree from Utkal University (1964).
9. Attended International Congress of "World Orientalists' in Canberra, Australia (January 1970)
10. Worked in the Indian Institute of Advanced Studies, Rashtrapati Nivas, Simla, as a Visiting Fellow (1970-71).
11. Attended Bangladesh History Congress in Dacca (1973).
12. Interviewed Earl Mountbatten in London (March 1976).
13. Visited South Asia Institute of Heidelberg University (1976).
14. Attended International Congress of Scientists and Historians, organised by UNESCO and held in Norwich, UK ) July –
15. Worked as a Visiting Professor in USA (1979). Visited Canada.
16. Visited UK in 1981 to consult the Mountbatten papers, till then not open for research.
17. Attended "International Congress of Historical Sciences" Paris (1982).
18. Was deputed to UK to collect material for "Towards Freedom" Project of Indian Council os Historical Research. (October 1982).
19. Became Vice-Chancellor of Utkal University in September 1983.
20. Attended a Conference of Historians in Los Angeles, USA (April 1984).
21. Joined as a National Fellow of University Grants Commission (May 1985).
22. Attended International Congress of "Historical Science" held in Stutgard, West Germany (August 1985).

23. Was deputed to USA to give lectures on Indian National Congress on the occasion of the Congress Centenary Calebrations (October 1985).

24. Visited UK for higher research (1987).

25. Was deputed to Hungary to attend a Conference of Historians (December 1989).

26. Visited UK for research work (March-May 1990).

**Published Books of M. N. Das Include :**

1. Glimpses of Kalinga History, Century Publishers, Calcutta, 1950.
2. Social & Economic Development of India (1848-56)m Firma K. L. M., Calcutta, 1957.
3. The Political philosophy of Jawaharlal Nehru, Allen & Unwin, London, 1961 & The John Day Company, New York, 1962.
4. India Under Morley & Minto : Politics Behind Revolution, Repression & Reorms, Allen & Unwin, London, 1964.
5. Social, Cultural & Economic History of India (Modern Period), Macmillan, Delhi 1971.
6. Indian National Congress versus the British, Ajanta, Delhi, 1977.
7. partition & Independence of India : Inside Story of the Mountbatten Days, Vision Books, New Delhi, 1982.
8. End of the British Indian Empire : Politics of Divide & Quite (Select Documents), vidyapuri, Cuttack, 1983.

**Edited Books :**

1. Sidelight on Hisotry & Culture of Orissa, Vidyapuri, Cuttack, 1978.
2. Orissa Bibliography, vidyapuri, 1981.
3. A Centenary History of the Indian National Congress, Vol-III(Released on the occasion of the Centenary Celebrations of the Indian National Congress on 28th December 1985 at Bombay.)

   (Serval research papers published in Journals articles published in Encyclopaedia Britannica and Grolier Encyclopedia. Serval Candidates obtained D. Litt. & Ph. D. Degrees under guidance).
4. English Novel : Keep The Story Secret, Vidyapuri, 1967
5. Latest Publication : The Odyssey of Emperor Asoka Maurya:Kalinga War to Universal Peace, Rima Publishers, Delhi, 1992.

**Oriya Books :**

1. ଯୁଗେ ଯୁଗେ ଉତ୍କଳୀୟ ଧର୍ମ ଓ ସଭ୍ୟତା (୧୯୫୧)
2. ଅସ୍ତରାଗ (ଉପନ୍ୟାସ) (୧୯୫୩)
3. ଅସ୍ପଷ୍ଟ ଆଖ୍ୟାନ (ନାଟକ) (୧୯୬୨)
4. ସମୟ ସାଗର ତୀରେ (୧୯୮୧)-ଉପନ୍ୟାସ
5. ଜୀବନର ପଥପ୍ରାନ୍ତେ ଦିଗନ୍ତର ଦୃଶ୍ୟ(୧୯୯୬)-ଆତ୍ମଜୀବନୀ
6. ହେ ବିଧାତା, ହେ ବସୁଧା (୨୦୦୨)-ଉପନ୍ୟାସ



# 'ଇସ୍ତାହାର' ରଜତ ଜୟନ୍ତୀ ଉତ୍ସବ

ସ୍ଥାନ- ଜୟଦେବ ଭବନ

ତା- ୨୫।୧୦।୨୦୦୩

ସଭାପତି **ଶ୍ରୀ ରମାକାନ୍ତ ରଥ,** ବରେଣ୍ୟ କବି

(ଜନ୍ମ ୧୩ ଡିସେମ୍ବର, ୧୯୩୪)

ରେଭେନ୍‌ସା କଲେଜରୁ ଇଂରାଜୀରେ ସ୍ନାତକୋତ୍ତର ଡିଗ୍ରୀ ପ୍ରାପ୍ତି ପରେ ୧୯୫୭ରେ ସର୍ବଭାରତୀୟ ପ୍ରଶାସନିକ ସେବାରେ (I.A.S) ଯୋଗାଦାନ ଏବଂ ୧୯୯୨ ଡିସେମ୍ବର ମାସରେ ଓଡ଼ିଶାର ମୁଖ୍ୟସଚିବ ଭାବେ ଅବସର ଗ୍ରହଣ ।

୧୯୯୩-୯୮-କେନ୍ଦ୍ର ସାହିତ୍ୟ ଏକାଡେମୀର ଉପସଭାପତି

୧୯୯୮-୨୦୦୨- ସାହିତ୍ୟ ଏକାଡେମୀର ସଭାପତି

ପ୍ରକାଶିତ କବିତା ପୁସ୍ତକ:-

୧. କେତେଦିନର (୧୯୬୩)
୨. ଅନେକ କୋଠରୀ (୧୯୬୭)
୩. ସନ୍ଦିଗ୍ଧ ମୃଗୟା (୧୯୭୧)
୪. ସପ୍ତମ ଋତୁ (୧୯୭୭)
୫. ସଚିତ୍ର ଅନ୍ଧାର (୧୯୮୨)
୬. ଶ୍ରୀରାଧା (୧୯୮୫)
୭. ଶ୍ରୀ ପଳାତକ (୧୯୯୬)
୮. ସୀମାନ୍ତ ବାସ (୨୦୦୨)

ପୁରସ୍କାର- ସାହିତ୍ୟ ଏକାଡେମୀ, ଶାରଳା ପୁରସ୍କାର, ସରସ୍ୱତୀ ସମ୍ମାନ, କବିର ସମ୍ମାନ ଇତ୍ୟାଦି ...

ଏବେମଧ୍ୟ କବିତା ରଚନାରେ ସକ୍ରିୟ ଅଛନ୍ତି ଓ ଗତ ପୂଜା ଅବକାଶରେ ଓଡିଶାର ପ୍ରମୁଖ ପତ୍ର ପତ୍ରିକାରେ ଦଶୋଟିରୁ ଅଧିକ କବିତା ଲେଖି ସାରିଛନ୍ତି । କବିତା ବ୍ୟତୀତ ଗଦ୍ୟ ରଚନା ଓ ଗଳ୍ପ ରଚନାରେ ମଧ୍ୟ ତାଙ୍କ ପାରଦର୍ଶିତା ପ୍ରମାଣିତ । ଓଡିଶାର ବହୁ ନୂତନ ଓ ପୁରାତନ କବିଙ୍କ ଅନୁସରଣୀୟ ଉତ୍ସାହଦାତା ଉତ୍ସ ଭାବେ ଅସପତ୍ନ ପ୍ରତିଭାର ଅଧିକାରୀ । ସେ ଆଜି ସର୍ବଭାରତୀୟ କ୍ଷେତ୍ରରେ ଜଣେ ପ୍ରଭାବଶାଳୀ କବି ଭାବେ ସ୍ୱୀକୃତ ଓ ଆଦୃତ ହୋଇ ସାରିଛନ୍ତି ।

–'ଇସ୍ତାହାର' ସଂପାଦନା ମଣ୍ଡଳୀ



# 'ଇସ୍ତାହାର' ରଜତଜୟନ୍ତୀ ଉଦ୍‌ଯାପନ ଉତ୍ସବ

## ବରେଣ୍ୟ ଅତିଥି ଶ୍ରୀ ସୌମ୍ୟରଂଜନ ପଟ୍ଟନାୟକ

ଆମ ସମୟରେ ଏହି ବିଶିଷ୍ଟ ବୁଦ୍ଧିଜୀବୀ ଓ ପ୍ରଗତିଶୀଳ ବ୍ୟକ୍ତିତ୍ୱ ବନାରାସ ବିଶ୍ୱବିଦ୍ୟାଳୟରୁ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ରାଜନୀତି ବିଜ୍ଞାନରେ ସ୍ନାତକୋତ୍ତର ଶିକ୍ଷା ଶେଷ କରି ସେଇ ବିଶ୍ୱବିଦ୍ୟାଳୟରେ ୧୯୭୨ରୁ ୧୯୮୩, ଦୀର୍ଘ ୧୧ ବର୍ଷ ଧରି ଅଧ୍ୟାପନାରତ ଥିଲେ । କିନ୍ତୁ ଓଡ଼ିଶାପାଇଁ କିଛି କରିବାର ସ୍ୱପ୍ନ ତାଙ୍କୁ ଅହରହ ଘାରି ରହୁଥିଲା । ସେ ଗଣମାଧ୍ୟମକୁ ନିଜର ସ୍ୱପ୍ନ-ପ୍ରକଳ୍ପ ଭାବେ ଗ୍ରହଣ କରି ଓଡ଼ିଶାକୁ ଫେରି ୪, ଅକ୍ଟୋବର, ୧୯୮୪ ମସିହାରେ 'ସମ୍ବାଦ' ଦୈନିକର ପ୍ରତିଷ୍ଠାତା ଓ ସଂପାଦକ ଭାବେ ଏକ ଭିନ୍ନ ଧରଣର ସମ୍ବାଦପତ୍ର ପ୍ରକାଶ କଲେ । ଦୀର୍ଘ ଅଠର ବର୍ଷର ପ୍ରଚେଷ୍ଟା ପରେ ସେଦିନର ଚାରାଗଛଟି ଆଜି ଏବେ ବୃହତ୍ ବନସ୍ପତିରେ ପରିଣତ ହୋଇ ସମଗ୍ର ଓଡ଼ିଶାର ସାମ୍ବାଦିକତା କ୍ଷେତ୍ରରେ ମାନଗତ ବୈପ୍ଳବିକ ପରିବର୍ତ୍ତନ ଆଣିବାରେ ସମର୍ଥ ହୋଇଛି । ଓଡ଼ିଶାର ପ୍ରଥମ ପ୍ରଭାତ ସଂସ୍କରଣ ରୂପେ ଆଗୁଆ ଖବର ଓ ଚିନ୍ତାଶୀଳ ବିତର୍କରେ ଭରପୂର ଏହି ସମ୍ବାଦପତ୍ରଟି ଓଡ଼ିଶାର ପ୍ରାୟ ଆଠଟି ବଡ଼ ବଡ଼ ସହରରୁ ତା'ର ସଂସ୍କରଣ ପ୍ରକାଶ କରିପାରିଛି ଓ ପ୍ରାତଃକାଳରେ ଓଡ଼ିଶାର ୧୩ ଲକ୍ଷ ଲୋକଙ୍କ ପାଖରେ ପହଂଚି ପାରୁଛି ।

ଶ୍ରୀ ପଟ୍ଟନାୟକ 'ସାଧାରଣ ପ୍ରଶାସନ' (Public Administration)ରେ ଦ୍ୱିତୀୟ ସ୍ନାତକୋତ୍ତର ଉପାଧି ପ୍ରାପ୍ତିପରେ ଲଣ୍ଡନ ସ୍କୁଲ ଅଫ୍ ଇକନମିକ୍ସ ଓ ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟରେ କିଛିକାଳ ଉଚ୍ଚତର ଗବେଷଣା ପାଇଁ ବିତାଇ ଥିଲେ । କିନ୍ତୁ ଏହି ଉଚ୍ଚ ଶିକ୍ଷାଗତ ଯୋଗ୍ୟତା କିମ୍ବା ବିଶ୍ୱବିଦ୍ୟାଳୟ ସମ୍ଭାବନାପୂର୍ଣ୍ଣ ବୃତ୍ତି ତାଙ୍କୁ ସନ୍ତୁଷ୍ଟ କରି ପାରୁନଥିଲା । ସେ ଜନସେବା ମାଧ୍ୟମରେ ଜନ୍ମଭୂମି ଓଡ଼ିଶାରେ କିଛି କରିବାର ଦୁର୍ବାର ଆକାଂକ୍ଷାରେ ଓଡ଼ିଶାର ରାଜନୈତିକ, ସାଂସ୍କୃତିକ ଓ ଆର୍ଥନୀତିକ ସମସ୍ୟାବଳୀ ମଧ୍ୟରେ ନିଜକୁ ବିଜଡ଼ିତ କରି ୧୯୯୬ ରୁ ୯୮ ମସିହା ମଧ୍ୟରେ ଏକାଦଶ ଲୋକସଭାରେ ଭୁବନେଶ୍ୱର ଲୋକସଭା ନିର୍ବାଚନମଣ୍ଡଳୀର ପ୍ରତିନିଧିତ୍ୱ କରିଥିଲେ । ସଂପ୍ରତି ଓଡ଼ିଶାର ଜନପ୍ରିୟ ସାମ୍ବାଦିକ ଓ ରାଜନୀତିଜ୍ଞ ଭାବେ ସେ ଓଡ଼ିଆ ଭାଷାର ପ୍ରଚାର ଓ ପ୍ରସାର ପାଇଁ "ଆମ ଓଡ଼ିଶା" ମାଧ୍ୟମରେ ଏକ ସଚେତନଗଣ ଆନ୍ଦୋଳନ ସୂତ୍ରପାତ କରିଛନ୍ତି । ସ୍କୁଲ ଓ କଲେଜ ଛାତ୍ରଛାତ୍ରୀଙ୍କ ମଧ୍ୟରେ ଶୁଦ୍ଧ ଓଡ଼ିଆ ଲେଖିବା ପ୍ରତିଯୋଗିତା ଠାରୁ, ଚିତ୍ରାଙ୍କନ, ବକ୍ତୃତା, ହସ୍ତାକ୍ଷର ଓ ସାଧାରଣ ଜ୍ଞାନ ପରୀକ୍ଷା ପର୍ଯ୍ୟନ୍ତ ବହୁବିଧ ସାଂସ୍କୃତିକ କାର୍ଯ୍ୟକ୍ରମ ମାଧ୍ୟମରେ ଓଡ଼ିଆ ଭାଷାପ୍ରତି ଆସିଥିବା ବିପଦର ମୁକାବିଲା କରି ଚାଲିଛନ୍ତି । ପୁଣ୍ୟାତ୍ମା ଉତ୍କଳ ଗୌରବ ମଧୁସୂଦନଙ୍କ ଜନ୍ମତିଥି (୨୮ଏପ୍ରିଲ)କୁ ଓଡ଼ିଶାର ସ୍ୱାଭିମାନ ଦିବସ ଭାବେ ନାମିତ କରି ସେ ସମଗ୍ର ରାଜ୍ୟରେ ଯେଉଁ ନବଚେତନାର ବାର୍ତ୍ତାବହ ଭାବେ ଠିଆ ହୋଇଛନ୍ତି ତାହା କେବଳ ଏକ ଅନବଦ୍ୟ ଆସ୍ପୃହା ନୁହେଁ ଏ ରାଜ୍ୟ ପାଇଁ ଅତୁଳନୀୟ ସମ୍ଭାବନା ମଧ୍ୟ । 'ସମ୍ବାଦ'ର ଅଗ୍ରସ୍ତମ୍ଭରେ ଶ୍ରୀ ପଟ୍ଟନାୟକଙ୍କ ରଚିତ 'ଆମ୍ଭଘରର ହାଲଚାଲ' ତା'ର ବୈପ୍ଳବିକ ପୂରୋଦୃଷ୍ଟି ଓ ନିର୍ଭୀକ ସତ୍ୟଦର୍ଶନ ପାଇଁ ଆଦୃତ ହେବା ସଂଗେ ସଂଗେ 'ଇଷ୍ଟର୍ଣ୍ଣ ମେଡିଆ ଲିମିଟେଡ୍‌ର ସମସ୍ତ ପ୍ରକାଶନ ପ୍ରତି ପାଠକବର୍ଗଙ୍କ ସତୃଷ୍ଣ ଦୃଷ୍ଟି ଆକର୍ଷଣ କରିଅଛି । ଓଡିଶାର 'ଗ୍ରାମପଞ୍ଚାୟତ ସଂପାଦକ ସଂଘ'ର ସଭାପତି ଭାବେ ଗ୍ରାମ ଗହଳର ସମସ୍ୟା ସହିତ ପ୍ରତ୍ୟକ୍ଷଭାବେ ଜଡିତ ଥାଇ ଏହି ସଂସ୍ଥାକୁ ଗଣସେବାର ଏକ ନିଷ୍ଠାପର ଅନୁଷ୍ଠାନଭାବରେ ଗଡିବାପାଇଁ ଉଦ୍ୟମରତ ଅଛନ୍ତି । ବହୁ ଶ୍ରମିକ ସଂସ୍ଥାର କର୍ମକର୍ତ୍ତାଭାବେ ଶ୍ରମ-ଆନ୍ଦୋଳନ ସହିତ ତାଙ୍କର ପ୍ରତ୍ୟକ୍ଷ ସଂପର୍କ ତାଙ୍କ ଗଣସେବାମୁଖୀ ରାଜନୈତିକ ଜୀବନର ବାର୍ତ୍ତାବହ ହେଉ ଓ ଦୁର୍ନୀତିମୁକ୍ତ କର୍ମତତ୍ପର ଗଠନମୂଳକ ରାଜନୀତିର ଭିତ୍ତି ସ୍ଥାପନ କରୁ ଏହାହିଁ ଆମର କାମନା ।

-ଇସ୍ତାହାର ସଂପାଦନୀ ମଣ୍ଡଳୀ



# 'ଇସ୍ତାହାର' ରଜତଜୟନ୍ତୀ ଉଦ୍‌ଯାପନ ଉତ୍ସବ

ତାରିଖ : ୨୫।୧୦।୨୦୦୩

ସ୍ଥାନ : ଜୟଦେବ ଭବନ, ଭୁବନେଶ୍ୱର

ଅଧ୍ୟାପକ **ଚିନ୍ତାମଣି ବେହେରା** ସହୃଦୟେଷୁ-
(ଜନ୍ମ ୭.୧୧.୧୯୨୭)

ମହାଶୟ,

ଓଡ଼ିଆ ସାହିତ୍ୟ ବାଣୀ ମନ୍ଦିରର ଅନ୍ୟତମ ଶ୍ରେଷ୍ଠ ସାଧକ ଓ ଉପାସକ ଭାବେ ଆପଣ ଜୀବନବ୍ୟାପୀ ଯେଉଁ ତପସ୍ୟା କରି ଆସିଛନ୍ତି ତାହା ଏବେ ବି ଅନୁକରଣୀୟ ହୋଇ ରହିଛି । ଓଡ଼ିଆ ସମାଲୋଚନା ବାଙ୍‌ମୟକୁ ଆପଣ ଦେଇଛନ୍ତି ଉନ୍ନତ ଭାବ ସମ୍ଭାର, ଅଭିଜାତ ଭାଷା ଓ ଶୈଳୀ ବିଭବ । ଶ୍ରେଣୀ କକ୍ଷରୁ ସାରସ୍ୱତ ସମ୍ମେଳନ ପର୍ଯ୍ୟନ୍ତ ଆପଣଙ୍କ ସମାଲୋଚନା ବହୁ ଛାତ୍ର ଓ ଶ୍ରୋତାଙ୍କୁ ମୁଗ୍ଧ କରିଛି । ଆପଣଙ୍କ ରଚିତ 'କାବ୍ୟ ଓ କଳାକାର' (୧୯୬୫), 'ବିଦଗ୍ଧ ପାଠକ' (୧୯୭୫), 'ଆଧୁନିକତାର କ ଖ ଓ ଅନ୍ୟାନ୍ୟ ଆଲୋଚନା' (୧୯୭୩), 'କଳାଦୃଷ୍ଟି' (୧୯୮୨), 'ସାହିତ୍ୟ ଚିନ୍ତା' (୧୯୯୨), 'ଚିତ୍ର ଓ ଚରିତ୍ର' (୧୯୯୭), ଛାତ୍ର ଓ ଗବେଷକମାନଙ୍କ ପାଇଁ ବିପୁଳ ସଂପଦ ଭାବେ ବିବେଚିତ ହେଉଛି । ଜଣେ ରୋମାଣ୍ଟିକ୍ କବିଭାବେ ଆପଣ 'ଶ୍ୱେତପଦ୍ମ', 'ସ୍ୱସ୍ତିକା' (୧୯୫୦), 'ନୂତନ ସ୍ୱାକ୍ଷର' (୧୯୫୭), 'ହେ ବୈଦେହୀ ଭୁଲିଯାଅ' (୧୯୬୧), 'ତୃତୀୟ ଚକ୍ଷୁ' (୧୯୬୫), 'ନୀଳ ଲୋହିତ' (୧୯୭୬), 'ନିଜେ ନିଜର ସାକ୍ଷୀ' (୧୯୯୬) ଆଦି କବିତା ସଂକଳନ ମାନଙ୍କରେ ନିଜର ଅର୍ଦ୍ଧ ଶତାବ୍ଦୀ ବ୍ୟାପୀ କାବ୍ୟ ସାଧନାର ମାନସିକତାକୁ ଲାଳିତ କରି ଆସିଛନ୍ତି । ବିଶ୍ୱ କବିଙ୍କ ରଚିତ 'ବିଶ୍ୱ ମାନବର ପଥେ' ଓ 'ନିବନ୍ଧ ମାଳା' (୨ୟ ଭାଗ)ର ଅନୁବାଦକ ଭାବେ ଆପଣ ସବୁଦିନେ ସ୍ମରଣୀୟ ରହିବେ । ଆପଣଙ୍କ ସାରସ୍ୱତ ସେବାର ଫଳଶ୍ରୁତିସ୍ୱରୂପ ଆପଣ ଓଡ଼ିଶା ସାହିତ୍ୟ ଏକାଡେମୀ, 'ବିଷୁବ ଝଙ୍କାର ପୁରସ୍କାର' ସମେତ ବହୁ ସାହିତ୍ୟ ଅନୁଷ୍ଠାନ ଦ୍ୱାରା ପୁରସ୍କୃତ ଓ ସମ୍ବର୍ଦ୍ଧିତ ହୋଇଛନ୍ତି । ଏକଦା ଫକୀର ମୋହନ ସାହିତ୍ୟ ପରିଷଦର ସଭାପତି ଓ ଓଡ଼ିଶା ସାହିତ୍ୟ ଏକାଡେମୀର ସଂପାଦକ ଭାବେ ବହୁ ଅନୁଷ୍ଠାନର ପ୍ରମୁଖ ଦାୟିତ୍ୱ ସୁଚାରୁରୂପେ ସଂପାଦନ କରିଛନ୍ତି ।

ହେ ବାଣୀସାଧକ ଗୁରୁଣାଂ ଗୁରୁ, ଆଜି ଇସ୍ତାହାର ତ୍ରୈମାସିକ ସାହିତ୍ୟ ପତ୍ରର ରଜତ ଜୟନ୍ତୀ ଉଦ୍‌ଯାପନ ଅବସରରେ ଆପଣଙ୍କୁ ସମ୍ବର୍ଦ୍ଧିତ କରି ଆମେ ନିଜକୁ ଗୌରବାନ୍ୱିତ ମଣୁଅଛୁ ।

| | | | |
|---|---|---|---|
| ସ୍ୱା : ସୌମ୍ୟରଂଜନ ପଟ୍ଟନାୟକ | ଡଃ ମନ୍ମଥନାଥ ଦାସ | ବ୍ରଜକିଶୋର ତ୍ରିପାଠୀ | ସ୍ୱା :ରମାକାନ୍ତ ରଥ |
| ବରେଣ୍ୟ ଅତିଥି | ବରେଣ୍ୟ ଅତିଥି | ମୁଖ୍ୟ ଅତିଥି | ସଭାପତି |

ସ୍ୱା : ନିତ୍ୟାନନ୍ଦ ଶତପଥୀ
ସଂପାଦକ 'ଇସ୍ତାହାର'



# 'ଇସ୍ତାହାର' ରଜତଜୟନ୍ତୀ ଉଦ୍‌ଯାପନ ଉତ୍ସବ

ତାରିଖ : ୨୫।୧୦।୨୦୦୩

ସ୍ଥାନ : ଜୟଦେବ ଭବନ, ଭୁବନେଶ୍ୱର

ବରେଣ୍ୟ ଗାଳ୍ପିକ ଶ୍ରୀ ଅଚ୍ୟୁତାନନ୍ଦ ପତି ସହୃଦୟେଷୁ-
(ଜନ୍ମ ତା ୨୨।୬।୧୯୨୭)

ମହାଶୟ,

ଆଧୁନିକ ଓଡ଼ିଆ କଥା ସାହିତ୍ୟର ନବଜାଗରଣ ପର୍ବରେ ଜଣେ ଅଭୂତପୂର୍ବ ଅଧିନାୟକର ସ୍ପର୍ଦ୍ଧା ଓ ସ୍ୱାଭିମାନ ନେଇ ଆପଣ ଓଡ଼ିଆ ନବ୍ୟ ପ୍ରୟୋଗବାଦୀ କଥା ସାହିତ୍ୟର ସୀମା ଓ ସମ୍ଭାବନାକୁ ସଂପ୍ରସାରିତ କରି ଆସିଛନ୍ତି। ଜୀବନର ଅର୍ଦ୍ଧ ଶତାବ୍ଦୀରୁ ଊର୍ଦ୍ଧ୍ୱକାଳ ଲେଖନୀ ଚାଳନା କରି ଆପଣ ଓଡ଼ିଆ ସାହିତ୍ୟକୁ ଏ ଯାବତ୍ 'ଅଶୁଭ ପୁତ୍ରର କାହାଣୀ' 'ଉଗ୍ରସେନ ଉବାଚ', 'ନିଆଁ ଜଳୁଛି', 'ସ୍ନାୟୁ ଓ ସନ୍ନ୍ୟାସୀ', 'ଚାରି ସଂଗାତ କଥା', 'ଅବାଧ୍ୟ ପ୍ରଜାପତି', 'ଅନ୍ୟ ଶିବିର' ଓ 'ଅଚ୍ୟୁତାନନ୍ଦ ପତିଙ୍କ ନିର୍ବାଚିତ ଗଳ୍ପ (୨୦୦୩) ଏହିପରି ୮ଟି ଗ୍ରନ୍ଥ ଉପହାର ଦେଇଛନ୍ତି। ଆପଣଙ୍କ ଗଳ୍ପର ଅନନ୍ୟ ଥିମ୍, ଗ୍ରାମ୍ୟ ଭାଷା ବିଭବ ଓ ନୂତନ ଶବ୍ଦ ନିର୍ମାଣ ଦକ୍ଷତା ଆପଣଙ୍କୁ ଓଡ଼ିଆ ଗଳ୍ପ ସାହିତ୍ୟରେ ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ପ୍ରଦାନ କରିଛି। ଆପଣଙ୍କ ଗଳ୍ପରେ ଅସତ୍ୟ, ଅବିଚାର ଓ ଅପସଂସ୍କୃତିର ଅନ୍ଧକାର ବିରୋଧରେ ତୀବ୍ର ପ୍ରତିକ୍ରିୟା ସହିତ ସମାଜର ଅପାଙ୍‌କ୍ତେୟ ବର୍ଗଙ୍କ ପ୍ରତି ପ୍ରକାଶ ପାଇଛି ଅସରନ୍ତି ସମ୍ବେଦନା। ତୀକ୍ଷ୍ଣ ଜୀବନ ଦୃଷ୍ଟି ସହିତ ତିର୍ଯ୍ୟକ ଚିତ୍ରଧର୍ମୀ ଶୈଳୀ ଓ ବ୍ୟଞ୍ଜନାତ୍ମକ ବର୍ଣ୍ଣନା ଆପଣଙ୍କ ଗଳ୍ପକୁ ପ୍ରଦାନ କରିଛି ଏକ ଅନବଦ୍ୟ ଉତ୍ତୀର୍ଣ୍ଣତା। ଶତାଧିକ ସ୍ମରଣୀୟ ଗଳ୍ପର ବରଣୀୟ ସ୍ରଷ୍ଟା ଭାବେ ଆପଣ ଓଡ଼ିଶା ସାହିତ୍ୟ ଏକାଡେମୀ, ପ୍ରଜାତନ୍ତ୍ର ବିଷୁବ ଓ 'ଝଙ୍କାର ପୁରସ୍କାର', 'ସାରଳା ସମ୍ମାନ', 'ଫକୀରମୋହନ ଗଳ୍ପ ସମ୍ମାନ' (ଉ.ସା.ସ), ଉତ୍କଳ ପାଠକ ସଂସଦ ସମ୍ମାନ ଆଦି ବହୁ ସାରସ୍ୱତ ସମ୍ମାନରେ ସମ୍ବର୍ଦ୍ଧିତ ହୋଇଛନ୍ତି।

ହେ ବାଣୀ ସାଧକ ମହାନ୍ ଗାଳ୍ପିକ, ଆଜି 'ଇସ୍ତାହାର' ତ୍ରୈମାସିକ ସାହିତ୍ୟ ପତ୍ରିକାର ରଜତ ଜୟନ୍ତୀ ଉଦ୍‌ଯାପନ ଅବସରରେ ଆପଣଙ୍କୁ ସମ୍ବର୍ଦ୍ଧିତ କରି ଆମେ ନିଜକୁ ଗୌରବାନ୍ୱିତ ମଣୁଅଛୁ।

| | | | |
|---|---|---|---|
| ସ୍ୱା : ସୌମ୍ୟରଂଜନ ପଟ୍ଟନାୟକ | ପ୍ରଫେସର ମନ୍ମଥନାଥ ଦାସ | ବ୍ରଜକିଶୋର ତ୍ରିପାଠୀ | ସ୍ୱା :ରମାକାନ୍ତ ରଥ |
| ବରେଣ୍ୟ ଅତିଥି | ବରେଣ୍ୟ ଅତିଥି | ମୁଖ୍ୟ ଅତିଥି | ସଭାପତି |

ସ୍ୱା : ନିତ୍ୟାନନ୍ଦ ଶତପଥୀ

ସଂପାଦକ'ଇସ୍ତାହାର'



# 'ଇସ୍ତାହାର' ରଜତଜୟନ୍ତୀ ଉଦ୍‌ଯାପନ ଉତ୍ସବ

ତାରିଖ : ୨୫।୧୦।୨୦୦୩

## ସୁସମାଲୋଚକ ଡକ୍ଟର ଗଗନେନ୍ଦ୍ରନାଥ ଦାଶ ସହୃଦୟେଷୁ-

(ଜନ୍ମ : ୨୫।୧୧।୧୯୪୦)

ମହାଶୟ,

ଅଧ୍ୟାପନା ଓ ଗବେଷଣାକୁ ଯଥାକ୍ରମେ ବୃତ୍ତି ଓ ପ୍ରବୃତ୍ତି ଭାବେ ଗ୍ରହଣ କରି ଆପଣ ଶ୍ରେଣୀକକ୍ଷରୁ ଆନ୍ତର୍ବିଶ୍ୱ ପର୍ଯ୍ୟନ୍ତ ନିଜର ବ୍ୟକ୍ତିତ୍ୱକୁ ସଂପ୍ରସାରିତ କରି ବହୁ ବିରଳ ସମ୍ମାନର ଅଧିକାରୀ ହୋଇ ପାରିଛନ୍ତି । ଉତ୍କଳ ବିଶ୍ୱବିଦ୍ୟାଳୟ ପରିଚାଳିତ ବି.ଜେ.ବି. ନୈଶ ମହାବିଦ୍ୟାଳୟ, ବିଶ୍ୱଭାରତୀ ଶାନ୍ତି ନିକେତନ, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ସ୍ନାତକୋତ୍ତର ଓଡ଼ିଆ ଓ ପରେ ଭାଷାତତ୍ତ୍ୱ ବିଭାଗରେ ବିଭିନ୍ନ ପଦପଦବୀରେ ଅଧିଷ୍ଠିତ ହୋଇ ଆପଣ ନିଜ ଅଧ୍ୟାପନା ଦକ୍ଷତାର ପରିଚୟ ଦେଇ ପାରିଛନ୍ତି । ପଶ୍ଚିମ ଜର୍ମାନୀସ୍ଥ ହେଡ଼ବର୍ଗ ବିଶ୍ୱବିଦ୍ୟାଳୟର ଦକ୍ଷିଣ ଏସିଆ ପ୍ରତିଷ୍ଠାନ ଆନୁକୂଲ୍ୟରେ ପରିଚାଳିତ ଓଡ଼ିଶା ଗବେଷଣା ପ୍ରକଳ୍ପରେ ମିଃ ହରମାନ୍ କୁଲ୍‌କେ, ଏ. ଆଇଚ୍‌ମ୍ୟାନ ଓ ଜି.ସି. ତ୍ରିପାଠୀଙ୍କ ସହିତ ଅନ୍ୟତମ ସଭ୍ୟଭାବେ କାର୍ଯ୍ୟ କରିବାର ଯେଉଁ ବିରଳ ସୁଯୋଗ ଲାଭ କରିଥିଲେ ତାହା ଆପଣଙ୍କୁ ସୋପାନ ଆରୋହଣର ବିପୁଳ ଅଭିଜ୍ଞତାରେ ଯଶସ୍ୱୀ କରିଅଛି । ତାହାର ଫଳଶ୍ରୁତି ସ୍ୱରୂପ ପରବର୍ତ୍ତୀ ସମୟରେ ମିଃ କୁଲ୍‌କେ, ପ୍ରଫେସର ମନ୍ମଥନାଥ ଦାସ ଓ ପ୍ରଫେସର କରୁଣାସାଗର ବେହେରାଙ୍କ ସହିତ ଯୌଥ ଉଦ୍ୟମରେ ପ୍ରକାଶିତ "Orissa, a classified and comprehensive bibliosraphy" ପରି ଏକ ମୂଲ୍ୟବାନ ପୁସ୍ତକ ଓଡ଼ିଶା ପ୍ରତି ପୃଥିବୀର ଦୃଷ୍ଟି ଆକର୍ଷଣ କରିପାରିଛି । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଭାଷାତତ୍ତ୍ୱ ବିଭାଗର ଆରମ୍ଭରୁ ବିକାଶ ପର୍ଯ୍ୟନ୍ତ ଆପଣଙ୍କ ଅବଦାନ ନିଶ୍ଚୟ ସବୁଦିନେ ସ୍ୱୀକୃତ ହେବ । ଓଡ଼ିଆ ସାହିତ୍ୟକୁ ଆପଣଙ୍କ ମୌଳିକ ଗବେଷଣା ପ୍ରସୂତ ଗ୍ରନ୍ଥ 'ଜନଶ୍ରୁତି: କାଞ୍ଚିକାବେରୀ', 'ଓଡ଼ିଆ ଭାଷା ଚର୍ଚ୍ଚାର ପରଂପରା, 'ଖଦ୍ୟୋତର ଦ୍ୟୁତି' 'ଓଡ଼ିଆ ଭାଷା ସୁରକ୍ଷା ଆନ୍ଦୋଳନ' ଓ 'ଇସ୍ତାହାର' ସମେତ ବହୁ ପତ୍ରପତ୍ରିକାରେ ପ୍ରକାଶିତ ବିତର୍କମୂଳକ ପ୍ରବନ୍ଧ ନିଶ୍ଚିତଭାବେ ଆପଣଙ୍କ ପ୍ରମୁଖ ଅବଦାନ ଭାବେ ଲିପିବଦ୍ଧ ରହିବ । ଯୌଥ ସଂପାଦନାରେ ପ୍ରକାଶିତ ଶୈଳୀ ବିଜ୍ଞାନ, ଓଡ଼ିଆ ବ୍ୟାକରଣ (ମାଧ୍ୟମିକ ଶିକ୍ଷା ପରିଷଦ) ଓ ଡକ୍ଟର ଦେବୀ ପ୍ରସନ୍ନ ପଟ୍ଟନାୟକଙ୍କ ସହ ପ୍ରଣୀତ Conversational Oriya (ମହୀଶୂରରୁ ପ୍ରକାଶିତ) ଆପଣଙ୍କ ଭାଷାତାତ୍ତ୍ୱିକ ଅଧ୍ୟୟନର ପରିଚୟ ବହନ କରେ । ସେହିପରି ଆପଣଙ୍କ ରଚିତ Hindus and Tribals : A quest for coexistence (New Delhi) ପୁସ୍ତକ ଓ ଶାନ୍ତିନିକେତନରୁ ପ୍ରକାଶିତ Descriptive Morphology of Oriya ଗବେଷକମାନଙ୍କ ଦୃଷ୍ଟି ଆକର୍ଷଣ କରିଅଛି । ଓଡ଼ିଶାର ଜନଶ୍ରୁତି, ସଂସ୍କୃତି ଓ ଜଗନ୍ନାଥ ଧର୍ମ କୈନ୍ଦ୍ରିକ ବହୁ ବିଷୟରେ ପ୍ରବନ୍ଧ ଓ ପ୍ରାଚୀନ/ମଧ୍ୟଯୁଗୀୟ ସାହିତ୍ୟ ସଂପର୍କରେ ତଥା ଆଧୁନିକ ସାହିତ୍ୟ ସମାଲୋଚନାର ବହୁ ତାର୍କିକ ବିଷୟରେ ପ୍ରତିବାଦମୂଳକ ପ୍ରବନ୍ଧ ରଚନା କରି ଆପଣ ସାରସ୍ୱତ ବିତର୍କର ବଳୟରେ ବିଚରଣ କରୁଛନ୍ତି ।

'ଇସ୍ତାହାର' ତ୍ରୈମାସିକ ପତ୍ରିକା ଆପଣଙ୍କ ରଚିତ ବହୁ ପ୍ରବନ୍ଧକୁ ପତ୍ରସ୍ଥ କରିବାର ସୁଯୋଗ ଅତୀତରେ ପାଇଛି । ଏହି ପତ୍ରିକାର ରଜତ ଜୟନ୍ତୀ ଉଦ୍‌ଯାପନ ଉତ୍ସବରେ ଓଡ଼ିଆ ଭାଷା ସାହିତ୍ୟକୁ ଆପଣଙ୍କ ଅବଦାନର ସ୍ୱୀକୃତି ସ୍ୱରୂପ ଆପଣଙ୍କୁ ଅଭିନନ୍ଦନ ଜଣାଇବା ସହିତ ପଞ୍ଚଦଶ ସହସ୍ର ମୁଦ୍ରା ପାରିତୋଷିକ ପ୍ରଦାନ କରି ଆମେ ନିଜକୁ ଧନ୍ୟ ମନେ କରୁଅଛୁ ।

| | | | |
|---|---|---|---|
| ସୌମ୍ୟରଂଜନ ପଟ୍ଟନାୟକ | ଡଃ ମନ୍ମଥନାଥ ଦାସ | ବ୍ରଜକିଶୋର ତ୍ରିପାଠୀ | ସ୍ୱାଃରମାକାନ୍ତ ରଥ |
| ବରେଣ୍ୟ ଅତିଥି | ମୁଖ୍ୟ ଅତିଥି | ମୁଖ୍ୟ ଅତିଥି | ସଭାପତି |

ସ୍ୱାଃନିତ୍ୟାନନ୍ଦ ଶତପଥୀ
ସଂପାଦକ, ଇସ୍ତାହାର



# 'ଇସ୍ତାହାର' ରଜତଜୟନ୍ତୀ ଉଦ୍‌ଯାପନ ଉତ୍ସବ

ତାରିଖ : ୨୫।୧୦।୨୦୦୩

ବରେଣ୍ୟ କବି ଶ୍ରୀ ନୃସିଂହ ପ୍ରସାଦ ତ୍ରିପାଠୀ ସହୃଦୟେଷୁ-
(ଜନ୍ମ : ୧୮, ମାର୍ଚ୍ଚ, ୧୯୪୩)

ମହାଶୟ,

ଗଡ ଢେଙ୍କାନାଳର ଏକ କୁଳୀନ ପରିବାରରେ ଜନ୍ମନେଇ ପିତା ଦୈତାରି ତ୍ରିପାଠୀଙ୍କ ଉତ୍ସାହକ୍ରମେ ଆପଣ ଢେଙ୍କାନାଳସ୍ଥ ବି.ବି. ହାଇସ୍କୁଲରୁ ଏଲାହବାଦ ବିଶ୍ୱବିଦ୍ୟାଳୟରେ ସ୍ନାତକୋତ୍ତର ଶିକ୍ଷା ସମାପ୍ତି ପର୍ଯ୍ୟନ୍ତ ଦୀର୍ଘ ପଥ ଅତିକ୍ରମ କରିପାରିଛନ୍ତି । ସାମୟିକ ଭାବେ ଅର୍ଥନୀତି ବିଭାଗ (କେନ୍ଦ୍ରାପଡା କଲେଜ)ରେ ଅଧ୍ୟାପନା ପରେ ଆପଣ ୧୯୬୯ରୁ ଭାରତୀୟ ରାଜସ୍ୱ ସେବାରେ ଯୋଗଦେଇ ସଂପ୍ରତି କଲିକତାରେ ମୁଖ୍ୟ ଆୟକର କମିଶନର ଭାବେ କାର୍ଯ୍ୟରତ ଅଛନ୍ତି । ରାଜସ୍ୱ ସେବାର ଦୁରୂହ ଜଂଜାଳ ଭିତରେ ଆପଣ ନିଜ ମନ ଓ ହୃଦୟରେ ଲାଳନ କରି ଆସିଥିବା କାବ୍ୟ ମନନର ଫଳଶ୍ରୁତି ଭାବେ ଓଡିଆ ସାହିତ୍ୟକୁ 'ପୂର୍ବଦିଗ' (୧୯୮୦), 'ହେ ଈଶ୍ୱର ଉଠ' (୧୯୮୩), 'ବୁଦ୍ଧାମଣା' (୧୯୮୩), 'ନିଦ୍ରିତ ସନ୍ୟାସ' (୧୯୮୯), 'ପର୍ବ' (୧୯୯୨) 'ମନୋନିବେଶ' (୧୯୯୪), 'ଶୂନ୍ୟରମଣ' (୧୯୯୮), 'ଲାବଣ୍ୟବତୀ' ଓ 'ଚାରୁଚନ୍ଦ୍ର ଲେଖା' (ଅନୁବାଦ) ଆଦି ମୂଲ୍ୟବାନ ସୃଷ୍ଟି ସମୂହ ଦାନ କରିଛନ୍ତି । ଆପଣଙ୍କ କବିତା ପୁସ୍ତକର ହିନ୍ଦି ଅନୁବାଦ 'ମୁରଲୀ ସାହୁକା ଦିନ' ଓ 'ପୁନର୍ଭବା' ଭାରତର ସୁଧୀ ପାଠକ ସମାଜର ଦୃଷ୍ଟି ଆକର୍ଷଣ କରିଅଛି ।

ଆପଣ 'ନବଲିପି' ମାସିକ ସାହିତ୍ୟ ପତ୍ରିକାର ପ୍ରତିଷ୍ଠାତା ଓ ପୃଷ୍ଠପୋଷକ ଭାବେ ଓ ବହୁ ଓଡିଆ ପତ୍ରପତ୍ରିକାକୁ ସାମୟିକ ସାହାଯ୍ୟ ପ୍ରଦାନ ସୂତ୍ରରେ ଓଡିଆ ସାହିତ୍ୟର ଅଗ୍ରଗତିରେ ବରାବର ଉଦାରଭାବେ ସହଯୋଗ କରି ଆସିଛନ୍ତି । ବହୁ ଦାତବ୍ୟ ଅନୁଷ୍ଠାନ ଓ ସାଂସ୍କୃତିକ ଅନୁଷ୍ଠାନର ସ୍ରଷ୍ଟା ଓ ପୃଷ୍ଠପୋଷକ ଭାବେ ଆପଣ ସ୍ମରଣୀୟ ରହିବେ ।

ଆଜି 'ଇସ୍ତାହାର'ର ରଜତଜୟନ୍ତୀ ଉଦ୍‌ଯାପନ ଉତ୍ସବରେ ଆପଣଙ୍କର ଓଡିଆ ସାହିତ୍ୟକୁ ଓ 'ଇସ୍ତାହାର'କୁ ଅବଦାନର ସ୍ୱୀକୃତି ସ୍ୱରୂପ ଆପଣଙ୍କୁ ପଞ୍ଚଦଶ ସହସ୍ର ମୁଦ୍ରା ଓ ମାନପତ୍ର ପ୍ରଦାନ କରି ଆମେ ନିଜକୁ ଗୌରବାନ୍ୱିତ ମନେ କରୁଅଛୁ ।

| | | | |
|---|---|---|---|
| ସୌମ୍ୟରଂଜନ ପଟ୍ଟନାୟକ<br>ବରେଣ୍ୟ ଅତିଥି | ଡଃ ମନ୍ମଥନାଥ ଦାସ<br>ମୁଖ୍ୟ ଅତିଥି | ବ୍ରଜକିଶୋର ତ୍ରିପାଠୀ<br>ମୁଖ୍ୟ ଅତିଥି | ସ୍ୱାଃରମାକାନ୍ତ ରଥ<br>ସଭାପତି |

ସ୍ୱାଃନିତ୍ୟାନନ୍ଦ ଶତପଥୀ
ସଂପାଦକ, ଇସ୍ତାହାର



# 'ଇସ୍ତାହାର' ରଜତଜୟନ୍ତୀ ଉଦ୍‌ଯାପନ ଉତ୍ସବ

ତାରିଖ : ୨୫।୧୦।୨୦୦୩

ସ୍ଥାନ : ଜୟଦେବ ଭବନ, ଭୁବନେଶ୍ୱର

## ଗାଳ୍ପିକ ଶ୍ରୀ ରବି ସ୍ୱାଇଁ ମହୋଦୟେଷୁ -

(ଜନ୍ମ : ଶ୍ରାବଣ ପୂର୍ଣ୍ଣିମା, ୧୯୫୦)

ମହାଶୟ,

ମହୋଦଧି କୂଳସ୍ଥ ପାରାଦ୍ୱୀପ ବନ୍ଦରାଞ୍ଚଳକୁ ନିଜ କର୍ମମୟ ଜୀବନର ବହୁମୁଖୀ ପରିସର ଭାବେ ଗ୍ରହଣ କରି ଆପଣ ବହୁ ଆନୁଷ୍ଠାନିକ ସାରସ୍ୱତ କାର୍ଯ୍ୟକ୍ରମରେ ନିଃସ୍ୱାର୍ଥପର ଭାବେ ନିଜକୁ ଅଙ୍ଗୀଭୂତ କରି ଆସିଛନ୍ତି। ସେହି ଉଦ୍ୟମର ଫଳଶ୍ରୁତି ସ୍ୱରୂପ 'ମୈନାକ ସାହିତ୍ୟ ସଂସଦ', ପାରାଦ୍ୱୀପ ସାକ୍ଷରତା ସମିତି, ପ୍ରଗତିଶୀଳ କଳା ପରିଷଦ, ଜଗନ୍ନାଥ ଲଳିତ କଳା ସଂସଦ ଓ ଯୋଗସେବା କେନ୍ଦ୍ରର ସଂପାଦକ ଭାବେ ଆପଣ ଓଡ଼ିଶାର ସାହିତ୍ୟ-ସଂସ୍କୃତିର ପ୍ରାଣ ପ୍ରବାହ ସହିତ ପାରାଦ୍ୱୀପର ସଂଯୋଗ ସ୍ଥାପନରେ ଅନୁବ୍ରତୀ ଅଛନ୍ତି। ଏକଦା 'ଇସ୍ତାହାର' ସଂପାଦନା ମଣ୍ଡଳୀର ସଦସ୍ୟ, ସଂପ୍ରତି 'ସାକ୍ଷର ଦ୍ୱୀପ' ମାସିକ ଓ 'ଦ୍ୱୀପ ଜ୍ୟୋତି' ତ୍ରୈମାସିକ ସାହିତ୍ୟ ପତ୍ରିକାର ସଂପାଦକ ଭାବେ ଆପଣ ପାରାଦ୍ୱୀପର ସାନ ଓ ବଡ଼ ବହୁ ସାହିତ୍ୟିକଙ୍କୁ ଲୋକଲୋଚନକୁ ଆଣିବାରେ ସଚେତନ ଉଦ୍ୟମ କରି ଆସିଛନ୍ତି। ଶିକ୍ଷକତା ଆପଣଙ୍କର ବୃତ୍ତି ହେଲେ ବି ଗଳ୍ପ ରଚନାକୁ ପ୍ରବୃତ୍ତି ଭାବେ ଗ୍ରହଣ କରି ଆପଣ ଏ ଯାବତ୍ ଓଡ଼ିଆ ସାହିତ୍ୟକୁ ଦଶୋଟି ଗଳ୍ପ ସଂକଳନ ଓ ଗୋଟିଏ ଉପନ୍ୟାସ ପ୍ରଦାନ କରିଛନ୍ତି। ଟି.ଏସ୍.ଏଲିଅଟ୍‌ଙ୍କ ପୁସ୍ତକର ଅନୁବାଦ କ୍ଲାସିକର ସ୍ୱରୂପ' (What is classics) ଏବଂ କବି ଦୀପକମିଶ୍ରଙ୍କ ଉପରେ ରଚିତ 'ଦୀପକ ମିଶ୍ରଙ୍କ କାବ୍ୟଚେତନା ଓ ପ୍ରକାଶୋନ୍ମୁଖୀ 'ପ୍ରଗତିଶୀଳ ସମାଲୋଚନା'- ଆପଣଙ୍କୁ ଜଣେ ବିଦଗ୍ଧ ସମାଲୋଚକଭାବେ ପରିଚିତ କରିବ। ଆପଣଙ୍କ ଦୁଇ କବିତା ପୁସ୍ତକ ''ଅକବିତାର ଆଦିପର୍ବ' ଓ 'ଅକବିତାର ବିଷାଦ ପର୍ବ' ଚର୍ଚ୍ଚାର ବଳୟକୁ ଆସିପାରିଛି। ଗଳ୍ପପୁସ୍ତକ 'ଡେଙ୍ଗା ମଣିଷ', 'ମୁଁ ଏକ ବନ୍ଦୀଶାଳା', 'ଝଡ଼ ସହ କଥାବାର୍ତ୍ତା', 'ପୃଥିବୀର ଅସ୍ତ', 'ହୃଦୟଯୋଗ' ଓ ଇସ୍ତାହାର ସମେତ ଓଡ଼ିଶାର ପତ୍ର ପତ୍ରିକାରେ ପ୍ରକାଶିତ ରାଶି ରାଶି ଗଳ୍ପରେ ଆପଣ ଜଣେ ଉତ୍ତୁଙ୍ଗ ଗଳ୍ପ-ବ୍ୟକ୍ତିତ୍ୱ ଭାବେ ସ୍ୱତଃ ଆପଣଙ୍କ ପରିଚୟ ସାବ୍ୟସ୍ତ କରି ପାରିଛନ୍ତି।

ହେ ମରମୀ ଗାଳ୍ପିକ, ଆଜି ଇସ୍ତାହାର ତ୍ରୈମାସିକ ସାହିତ୍ୟ ପତ୍ରର ରଜତ ଜୟନ୍ତୀ ଉଦ୍‌ଯାପନ ଦିବସରେ ଆପଣଙ୍କୁ ସମ୍ବର୍ଦ୍ଧିତ କରିବା ସହିତ ପଞ୍ଚଦଶ ସହସ୍ର ମୁଦ୍ରା ପାରିତୋଷିକ ପ୍ରଦାନ କରି ଆପଣଙ୍କ ଗଳ୍ପମାନସର ଉତ୍ତରୋତ୍ତର ବିକାଶ କାମନା କରୁଅଛୁ।

ସ୍ୱାଃରମାକାନ୍ତ ରଥ
ସଭାପତି

| | | | |
|---|---|---|---|
| ସୌମ୍ୟରଂଜନ ପଟ୍ଟନାୟକ | ଡଃ ମନ୍ମଥନାଥ ଦାସ | ବ୍ରଜକିଶୋର ତ୍ରିପାଠୀ | ସ୍ୱାଃନିତ୍ୟାନନ୍ଦ ଶତପଥୀ |
| ବରେଣ୍ୟ ଅତିଥି | ମୁଖ୍ୟ ଅତିଥି | ମୁଖ୍ୟ ଅତିଥି | ସଂପାଦକ, ଇସ୍ତାହାର |

# "ନିର୍ବାଣଦୀପେ କିମୁ ତୈଳଦାନମ୍"

['ଇସ୍ତାହାର' ଶାରଦୀୟ ବିଶେଷ ସଂଖ୍ୟାର ସଂପାଦକୀୟ ପଢ଼ି ପ୍ରାୟ ତିରିଶ ଜଣ ସାହିତ୍ୟିକ ଟେଲିଫୋନ୍ ଯୋଗେ ସେମାନଙ୍କ ମାନସିକ ପ୍ରତିକ୍ରିୟା ପ୍ରକାଶ କରିଥିବାବେଳେ ଯେଉଁ କେତେକଣ ସହୃଦୟ ସାହିତ୍ୟିକ ପତ୍ର ଦେଇଛନ୍ତି ସେମାନଙ୍କୁ କୃତଜ୍ଞତା ଜଣାଇବା ସହିତ ସେମାନଙ୍କ ପତ୍ରକୁ ଏହି ରଜତ ଜୟନ୍ତୀ ପୁସ୍ତିକାରେ ପତ୍ରସ୍ଥ କରୁଅଛୁ- ସଂପାଦକ]

ସାଲେପୁରସ୍ଥ ବଟେଶ୍ୱରରୁ ମହାନବମୀ ତିଥିରେ ଏକ ଦୀର୍ଘ ଚିଠି ଲେଖିଛନ୍ତି କବି **ସଦାଶିବ ଦାଶ।**

ସମ୍ମାନୀୟ ଭାଇନା,

ଶାରଦୀୟ ସାରସ୍ୱତ ପ୍ରଣାମ ଗ୍ରହଣ କରିବେ। ଆଜି ସାଲେପୁରରୁ 'ଇସ୍ତାହାର' କିଣି ସର୍ବପ୍ରଥମ ଆପଣଙ୍କ ମର୍ମଥରା ସଂପାଦକୀୟ ଦୁଇଥର ପଢ଼ିଲି। କେବେ ଆପଣଙ୍କୁ ଏତେ ମନଖୋଲା ଚିଠି ଲେଖିନି। କାରଣ ଆପଣ ସେଇ ଖୋଲା ଭାବର ମଣିଷଭାବେ ଏ ଯାଏ ମୋ ଦୃଷ୍ଟିରେ ଉପଲବ୍ଧ ନଥିଲେ। ମଣିଷ ମାତ୍ରେ ବହୁଧା ବିଭକ୍ତ। ଆପଣ ଥିଲେ ଏକଦା ସାହିତ୍ୟର ମଣିଷ, ସଂପାଦକ-ମଣିଷ, କିଛି ସାର୍ବଜନୀନ ମଣିଷଙ୍କର ପୃଷ୍ଠପୋଷକ ମଣିଷ। ଏତେ ଖୋଲାଭାବେ ଜୀବନ-ସମୁଦ୍ର କୂଳରେ ବସି ନୀଳ ଦରିଆକୁ ଖୋଲା ହୃଦୟରେ ନିରୀକ୍ଷଣ କରୁଥିବା ବ୍ୟକ୍ତିଜଣେ ଏ ଯାଏ ମୋ ଅନୁଭବରେ ଧରା ଦେଇ ନଥିଲା। 'ଇସ୍ତାହାର' ଯିବ କି ରହିବ ବଡ଼ କଥା ନୁହେଁ; ପ୍ରକୃତ ହେଉଛି ଅନୁଭବ, ଚିନ୍ତନ ଆଉ ଉପଲବ୍ଧିରେ ଆଘାତ ଲାଗିଲେ ତାହା ହେଉଛି ସବୁଠାରୁ ବଡ଼ ବିଡ଼ମ୍ବନା। ଆପଣ ସେଇ ମାନସିକ ତାଡ଼ନାର ନିର୍ବାଣମୁଖୀ ସଂଜ ସଳିତା; ଭିନ୍ନ ଅର୍ଥରେ ଗୋଧୂଳିର କ୍ଳାନ୍ତ ସୂର୍ଯ୍ୟ। ଆପଣ ସାରା ୨୫ ବର୍ଷରେ ଗୋଟିଏ ହେଲେ "ସାରସ୍ୱତ ଉତ୍ତରାଧିକାରୀ" ଚୟନ କିମ୍ବା ନିର୍ମାଣ କରାଇ ପାରିଲେନି। ଯେଉଁମାନଙ୍କୁ ଆପଣ ଉଠାଇ ଆଲଟ ଚାମର ଦିଆ ମେଲଣ ମଉଡ଼ମଣି ମେଡ଼ ସଜାଇଲେ, ଯେଉଁମାନଙ୍କୁ ଓଡ଼ିଆ ସାହିତ୍ୟର ଧୂର୍ଜଟୀ କିମ୍ବା ସତୀ ସୀତା ରୂପେ ପରିଚୟ ଦିଆଇଲେ, ସେମାନେ କଣ ତାହା ପ୍ରକୃତରେ ନଥିଲେ? ଆପଣ ଆପଣଙ୍କ ଜୀବଦଶାରେ ଯାହା ସ୍ୱୀକାର କରିଛନ୍ତି-ସବୁଠାରୁ ବଳି ନିଷ୍ଠୁର ସାହିତ୍ୟୋକ୍ତି।

ଲେଖିଛନ୍ତି 'ସାରସ୍ୱତ ଉତ୍ତରାଧିକାରୀ' ନାହାନ୍ତି। ଭୁଲ କଥା ନୁହେଁତ? ଓଡ଼ିଶାର ପ୍ରଥିତ ଯଶା କବି ପ୍ରତିଭା ଶତପଥୀ, ସୁଗାଲ୍ପିକା ପାରମିତା ଶତପଥୀ କ'ଣ ଆପଣଙ୍କ ଠାରୁ ସେହି ଦାୟବନ୍ଧତାରୁ ମୁକ୍ତ ? ଆପଣଙ୍କ ଏକ୍‌ଲାପଣ ଅର୍ଥର ସ୍ୱାର୍ଥରେ ଛନ୍ଦା ଏହି ଦାୟାଦଗଣଙ୍କ ଦ୍ୱାରା ଆକ୍ରାନ୍ତ, ଦୂଷିତ ନା ପରାଭୂତ? କ'ଣ ପାଇଁ ଆପଣଙ୍କର ଏହି ଦୁଃଖଦ ନିଃସଙ୍ଗତା? ବ୍ୟବସାୟିକ ଲାଭକ୍ଷତିକୁ ନେଇ ସାହିତ୍ୟ ପତ୍ରିକା ଓଡ଼ିଶାରେ ଚଳେ ନାହିଁ। ଏ ସତ୍ୟକୁ ଜାଣି ମଧ୍ୟ ଆପଣ ୨୫ ବର୍ଷ ଧରି ଯେଉଁମାନଙ୍କୁ ରଥର ସାରଥୀ, ଅଶ୍ୱ, ଚକ୍ର ଓ ଚାବୁକ କରି ରଥଯାତ୍ରା କଲେ ତାହା କ'ଣ ଏତେ ପରିମାଣରେ ବିଫଳ? ଆପଣଙ୍କ ଏହି ଅଦିନିଆ ସନ୍ନ୍ୟାସ ବାସ୍ତବିକ ଏକ ନିର୍ଦ୍ଦିଷ୍ଟ କଳାବିନୋଦ ଗୋଷ୍ଠୀଙ୍କ ପାଇଁ ଦୁଃଖର ଦାବାନଳ ଆଣି ଦେବ। ମୁଁ ଜାଣେ ସେଇ ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀ ନିଶ୍ଚିତଭାବେ ଖୁସି ହେଉଥିବେ ଆପଣଙ୍କର ମଣିଷ ଚିହ୍ନି ନପାରିବାର ଦୟନୀୟ ପରାଜୟ ପାଇଁ। ଏହା ସତ୍ୟ ଯେ ଅର୍ଥ, କ୍ଷମତା, ପ୍ରତିଭା ହୀନତା ସବୁସମୟରେ ସ୍ରଷ୍ଟାକୁ ଜୀବନ୍ତ କରେନାହିଁ। ଅର୍ଥ କ୍ଷମତାରେ ମଦମତ୍ତ ବହୁ କବି ସାହିତ୍ୟିକଙ୍କୁ ଆପଣ ସ୍ୱାଧୀନତା ପରର କାଳିଦାସର ସମ୍ମାନ ଦେବାପାଇଁ ମଂଚ ଦେଇଛନ୍ତି। ତାଙ୍କ ସୃଷ୍ଟିର ଅର୍ଥକୁ ଯେଝା ସୁହାଇଲା ମତେ ନୂତନ ଜରିପୋଷାକ ପିନ୍ଧେଇ ଦେଇଛନ୍ତି। ହେଲେ ଭାଇନା, ସେମାନେ ସାହିତ୍ୟର ପୀଠ ଦେବୀ ନ ହୋଇ ପରିଣତ ହୋଇଛନ୍ତି ଚାକଚକ୍ୟଭରା ମୃଣ୍ମୟୀ ପ୍ରତିମାରେ- ଯାହା ସଂପ୍ରତି କ୍ଷଣିକ, ଅଳିକ, ସାମୟିକ ବାହ୍ୟ ଆଡ଼ମ୍ବରର ଆଟୋପରେ ଆକ୍ରାନ୍ତ।

ବୋଧହୁଏ ରାସ୍ତା ଚାଲିବାରେ ସେଇଠି ବିଚ୍ୟୁତି ରହିଗଲା। କେଉଁ ଅଧିକାରୀଙ୍କ ଅନୁକଂପାରେ 'ଇସ୍ତାହାର' ଚାଲିବା ଦ୍ୱାରା ବୋଧହୁଏ ସାମାନ୍ୟ ପାରଦକଣା ଯେପରି ବିରାଟ ବଂଧରେ ଘାଇ ସୃଷ୍ଟିକରେ ସେହିପରି 'ଇସ୍ତାହାର'କୁ ବଳି ପକାଇ ଦେଲା। ଅନେକ ପରିବାର ଗୋଷ୍ଠୀଙ୍କର ଏକାଧିକ ପତ୍ରିକା ଅଛି। ଆନ୍ଧ୍ରର ଇନାଡୁ ଗୋଷ୍ଠୀ, କେନ୍ଦ୍ରର

ମନୋରମା (ମାତୃଭୂମି) ଗୋଷ୍ଠୀ, ଓଡ଼ିଶାର ପ୍ରଜାତନ୍ତ୍ର ଇତ୍ୟାଦି...। ସେମାନଙ୍କ ମଧ୍ୟରେ ଦ୍ୱନ୍ଦ୍ୱ ନାହିଁକି ଗୋଛି କଟାକଟି ନାହିଁ। ଏଠି ଯଦି ଦୁଇଟି ପତ୍ରିକା ଚାଲନ୍ତା ବୋଧହୁଏ ଆପଣଙ୍କର ଆକଥିତ ଗୋଛିକଟାମାନେ ଆପଣଙ୍କୁ ନିପାରିବାର କହି ଆଶ୍ୱସ୍ତ ହୁଅନ୍ତେ ନାହିଁ। ସେମାନଙ୍କ ମୁଖା ଖୋଲିବାରେ ସାହସ ସଂଚୟ କରନ୍ତୁ। ନିଜକୁ ବୃଦ୍ଧ, ନିପାରିବାର, ଦୃଷ୍ଟିଶକ୍ତି କମିବାର ଆଳଦେଖାଇ ନିଃସଙ୍ଗ ମନେ କରନ୍ତୁ ନାହିଁ। ଏକଲା ଚାଲିବାରେ ଯେଉଁ ମାନସିକ ଦୃଢ଼ତା ମିଳେ ତାହା ପ୍ରତିଘାତମାନଙ୍କୁ ଡରି ତାସ୍‌ର ଘର ତିଆରି କରି ଆଶ୍ୱସ୍ତ ହେବାରେ ନଥାଏ ବିଜ୍ଞାପନଦାତା କିମ୍ବା ଭୁଲ୍ ବୁଝାମଣାକୁ ଡରି ସତ୍ୟକୁ ପ୍ରକାଶ କରିବାରୁ ଓହରିଯିବା ସାହିତ୍ୟିକ ଦାୟବଦ୍ଧତା ନୁହେଁ। ଯେଉଁ ବୃକ୍ଷ ଅହଂକାରରୁ ଜନ୍ମ ନିଏ କିମ୍ବା ଅନ୍ୟକୁ ମାରି ସବୁଜ ହେବାକୁ ଚେଷ୍ଟା କରେ ତାକୁ ସମୟ ଏବଂ ପ୍ରକୃତି ଉପଯୁକ୍ତ ସହାୟତା ଦିଏ ନାହିଁ। ଏହି ସତ୍ୟର ମୂଳଦୁଆ ଉପରେ ଠିଆହେଲେ ଆପଣ ଇସ୍ତାହାରକୁ ଯୁଗଜୟୀ କରାଇ ପାରିବେ। ମୋଟର ସାଇକେଲ୍‌ରେ ବସି ବୁଢ଼ା ବୟସରେ ୨୫୦ ଗ୍ରାହକ ଖୋଜିବା ଦରକାର ପଡ଼ିବ ନାହିଁ। କ'ଣ ଏପରି ତ୍ରୁଟି ଆପଣ କରିଥିଲେ ଯେ ୨୫ ବର୍ଷ ପରେ ୨୫୦ ଲୋକ ମଧ୍ୟ ମିଳିଲେ ନାହିଁ? ଆପଣଙ୍କୁ ଯଦି କେହି ବିଭାଜିତ କରି 'ଇସ୍ତାହାର'କୁ ବନ୍ଦ କରେଇ ଦେବାରେ ସଫଳ ହେଲା ତା'ହେଲେ ଆପଣ ଏ ପରାଜୟକୁ ସହି ପାରିବେତ? ଏଥିପାଇଁ ମୋର ଦୁଃଖଯେ ଅସତ୍‌କାମୀ ମାନଙ୍କର ଚେଷ୍ଟା ସଫଳ ନହେଉ।

ଭାଇନା, "ମୁଁ ଜାଣେ ସୃଷ୍ଟି ପାଖରେ ସ୍ରଷ୍ଟା ସବୁଦିନେ କ୍ରୀତଦାସ ହୋଇ ନିଉଛାଳି ହେବାକୁ ବାର୍ଦ୍ଧକ୍ୟରେ ବାଧ୍ୟ ହୁଏ" ଏହି ବାକ୍ୟଟି ମୋତେ ଖୁବ୍ ଦୋହଲାଇ ଦେଇଛି, ଆଖିରୁ ଲୁହ ଝରାଇ ଦେଇଛି। ତା' ନିଜସ୍ୱ ସୃଷ୍ଟି ପାଖରେ ସ୍ରଷ୍ଟା ତ ସବୁବେଳେ ନମ୍ରଭାବେ ମଥାନତ କରେ। ତା' ବୋଲି ଆପଣ ଏଇ ବ୍ୟାକ୍ ବାଇଟର ବିଶ୍ୱାସଘାତକମାନଙ୍କ ପାଖରେ ନିଉଛାଳି ହେବେ କାହିଁକି? ଆପଣଙ୍କ ସାରସ୍ୱତ ପ୍ରୟାସ ସାକାର ହୋଇଛି ଭାଇନା! ଯେତିକି ଯେଥିରୁ ନ ରହିବ ସେଥିପାଇଁ ଚିନ୍ତା କାହିଁକି? କେହି ଏଠି କାହାକୁ ମାରି ଦିଏ ନାହିଁ! ଭୀମଭୋଇଙ୍କ ଜୀବଦ୍ଦଶାରେ ତାଙ୍କର ଗୋଟିଏ ହେଲେ କବିତା ଛାପା ଯାଇନଥିଲା। ଓମର୍ ଖାୟାମ୍‌ଙ୍କ କବିତା ମରୁଭୂମିରୁ ଆସି ସାରାଜଗତ ବ୍ୟାପିଗଲା। ମୁଁ ତ ପୁଣି ୧୯୧୨ରେ ଲିଖିତ ମୌଲବୀ ଅବଦୁଲ୍ ରହିମ୍‌ଙ୍କର ସମସ୍ତ ଲେଖାକୁ ଛପାଇ ପାରିଛି। କେଉଁମାନେ ଯଦି ଚକ୍ରାନ୍ତ କରିଥା'ନ୍ତି ତା' ହେଲେ ଆପଣ ହେବେ ସେଇ କଣ୍ଟକିତ ହୋଇଥିବା ଯୀଶୁ, ଅଥବା ମୁଣ୍ଡକାଟ ହୋଇଥିବା କବି ଗୋଲାମ କୁଦ୍‌ସ। ଆପଣ ଯେଉଁ ଆବଶ୍ୟକତାର ସତ୍ୟକୁ ୨୫ ବର୍ଷ ଧରି ଜାଳିଥିଲେ ତାହା ଏକାନ୍ତ ଭାବେ ଅନନ୍ୟ। ସେ କାହା ସହ ତୁଳନୀୟ ନୁହେଁ, ତାହା ଏକ ଭିନ୍ନ ମୂଲ୍ୟବୋଧର ପ୍ରତିନିଧିତ୍ୱ କରେ। ତାର ଅର୍ଥ ଏହାର ବିରୋଧୀମାନେ ବିଜୟୀ ହୋଇ ତୃପ୍ତିରେ ହାକୁଡ଼ି ପକାନ୍ତୁ, ନିତ୍ୟାନନ୍ଦ ଶତପଥୀଙ୍କ ପରାଜୟରୁ ବିଶ୍ୱବନ୍ଦିତ ହୁଅନ୍ତୁ-ଏହା ଅନ୍ତତଃ ନହେଉ। ଏହାକୁ ଜୀବନର ଏକ ମୋଡ଼ ବା Struggle ଭାବେ ଧରି ନିଅନ୍ତୁ। ପରିପକ୍ୱତା ହିଁ ଲଢ଼େଇକୁ ଜୋରଦାର କରେ। ପ୍ରକୃତରେ ଯେଉଁମାନଙ୍କୁ ନେଇ ଆପଣ ବିଭିନ୍ନ ଭାବେ ୨୫ ବର୍ଷ ଧରି ନାଟକ କଲେ ତାର ଆଉ ଉପଯୋଗିତା ନାହିଁ ବହୁଭାବେ। ଏଣିକି ଅନ୍ତତଃ ଯେଉଁ ସତ୍ୟସବୁ ଅଲୋଡ଼ା ଅଖୋଜା ରହିଯାଇଛି ତାକୁ ପୂରଣ କରନ୍ତୁ। ଏଥର 'ଇସ୍ତାହାର'କୁ ଅଧିକ ସତ୍ୟନିଷ୍ଠ କରାନ୍ତୁ- ଦେଖିବେ, ବର୍ଷକରେ ୨୫୦୦ ଲୋକ ମିଳିଯିବେ। ସତ୍ୟ କହିବାର ସାହାସ, ନିଷ୍ଠା, ବେଦନାବୋଧ ଓ ଆନ୍ତରିକତା ଇତ୍ୟାଦି ସଂଯୋଜିତ ହେଲେ ତାହା ସମ୍ଭବ ହେବ। ଆପଣଙ୍କ ଧୃତରାଷ୍ଟ୍ରୀୟ ଅଂଧ ସ୍ୱଜନ ପ୍ରୀତି, ଅତ୍ୟଧିକ ଭାବେ ସେମାନଙ୍କୁ ପ୍ରତିଷ୍ଠିତ କରିବାର ଚିନ୍ତନ ଏତେଦିନପରେ ଆପଣଙ୍କ ବିଫଳତାକୁ ପ୍ରକାଶ କରାଇ ଦେଲା। ଜଣେ ହେଲେ ସଂଜୟ କେହିବି ସତକଥା ପ୍ରକାଶ କଲେ ନାହିଁ। ଆପଣଙ୍କ ମୋହବିଷ୍ଟତା ଆପଣଙ୍କୁ ପରାସ୍ତ କଲା। ଆପଣ ଏଣିକି ଯୁଧିଷ୍ଠିର ହୁଅନ୍ତୁ। ସାମାନ୍ୟ ମିଛ ପାଇଁ ସେ କି ଦଶା ନ ଭୋଗିଲେ? ସାଙ୍ଗରେ କୁକୁର ବେଶରେ ଚାଲୁଥିବା ଧର୍ମକୁ ସେ ମଧ୍ୟ ତାଙ୍କ ପାପ ଚକ୍ଷୁରେ ଶେଷ ପର୍ଯ୍ୟନ୍ତ ଦେଖି ପାରିଲେ ନାହିଁ। ଆପଣ ସେଇ ମହାକାଳ ହାତରେ ଆପଣଙ୍କ ପରାଜୟକୁ ସମର୍ପି ଦେଇ କ'ଣ ହୋଇ ପାରିବେ ଅଂଧ ଧୃତରାଷ୍ଟ୍ର ନା ଧର୍ମାର୍ଥୀ ଯୁଧିଷ୍ଠିର? ଏଣିକି ବେଲାଲସେନର କଟାମୁଣ୍ଡ ସାଜି ସବୁଙ୍କୁ ଦେଖନ୍ତୁ। ସତ୍ୟକୁ ପ୍ରକାଶ କରନ୍ତୁ। ମଲାଂଗମାନଙ୍କୁ ଉତ୍ପାଟିତ କରାଇ ଓଡ଼ିଆ ସାହିତ୍ୟରୁ ଦୁଷ୍କର୍ମୀମାନଙ୍କୁ

ବିଦାୟ ଦିଅନ୍ତୁ । ଆପଣ କ'ଣ ଶରଶଯ୍ୟାରେ ଥାଇ ଭୀଷ୍ମ ପ୍ରତିଜ୍ଞା ନେଇ ପାରିବେ?

କାହା ହାତରେ 'ଇସ୍ତାହାର'କୁ ଟେକି ନେଇ ନିଶ୍ଚିନ୍ତ ହେବେ ଭାଇନା? ଏଠି ମଣିଷ ଖୋଜି ପାଇବା କାଠିକର ପାଠ । ଯେଉଁଠି ନିଜର ଲୋକମାନେ ଆନ୍ତରିକ ଧୋକାବାଜ ସେଠି ମଣିଷ ଖୋଜନ୍ତୁ ଦେଖିବେ ଭାରୀ କଷ୍ଟ ହେବ । ଏଠି ଆପଣ କ'ଣ ଏଯାଏ ବୁଝିପାରିଲେନି ଓଡ଼ିଶାର କେଉଁ ସାହିତ୍ୟିକମାନେ ସହୃଦୟର ଅଧିକାରୀ? କେଉଁମାନଙ୍କର ସୃଜନଧାରା ସମୟର ପ୍ରକୃତ ପ୍ରତିନିଧିତ୍ୱ କରେ? ବୋଧହୁଏ ପୁଣି ଆଉ ଏକ କୁହୁଡ଼ିଆ ଭ୍ରମରେ ପଡ଼ିଯିବେ। ବହୁଲୋକ ଉଦେଶ୍ୟର ସାରଥୀ ସାଜି ଆସିବେ । କିଏ ବା କାହିଁକି ଆପଣଙ୍କ ସ୍ୱପ୍ନକୁ ସାକାର କରିବ? ଯେଉଁମାନଙ୍କ ପାଇଁ ସାରାଜୀବନ ଆପଣଙ୍କ ସାହିତ୍ୟିକ ଚିନ୍ତନ ଉଛଳ ହେଲା, କାହିଁ ସେମାନେ କ'ଣ ଆସିବେ? ଆଉ ଯେମିତି କିଛି ଲୋକଙ୍କୁ ବାଛନ୍ତୁ ଯେ ବୋଝ ବୋହି ପାରିବେ । ନାଁ ଛାପା ଅପେକ୍ଷା 'ଇସ୍ତାହାର'କୁ ଦ୍ୱାରେ ଦ୍ୱାରେ ପହଁଚାଇ ପାରିବେ । ଆପଣ ଏବେବି କର୍ମମୁଖର ଅଛନ୍ତି । କେହି ବାପ କଣ ଚାହେଁ ତାର ୨୫ ବର୍ଷର ଭେଣ୍ଡିଆ ପୁଅ ଅକାଳରେ ମୃତ୍ୟୁ ବରଣ କରୁ? ଏହା ଆତ୍ମହତ୍ୟାର ଦୁଃଖ ଦେବ ।

ମୁଁ ଜୀବନ୍‌ରେ ଏତେ ଦୀର୍ଘ ପତ୍ର କେଉଁ ସଂପାଦକଙ୍କ ପାଖୁ ଲେଖିନାହିଁ । ହଁ ଲେଖୁଥିଲି- ତାହାଥିଲା ପ୍ରେମ ପତ୍ର । ଛଦ୍ମ ନାମରେ ନାରୀ ଲେଖିକା ସାଜି ୧୯୬୬ରୁ ୭୦ରେ । ଯେତେବେଳେ ଅନେକ ସଂପାଦକ ମୋ ଲେଖାକୁ ନ ଛାପିଲେ ସେତେବେଳେ ସେମାନଙ୍କ ଚାରିତ୍ରିକ ସ୍ଖଳନକୁ ପରଖିବାକୁ । ମୋ ମନକୁ ଖୁବ୍ ବାଧିଛି ଭାଇନା; ଜଣେ ସହୃଦୟର ଦୁଃଖଭାବେ ଏହାକୁ ଗଣ୍ୟ କରିବେ । ଆପଣ ନଇଁ ପଢ଼ିଥିବାବେଳେ ମୋର ଏହାକୁ ବଜ୍ରପ୍ରହାର ମନେ ନ କରି କାନ୍ଧରେ କାନ୍ଧ ଲଗାଇବାର ଅଭିଳାଷ ବୋଲି ବିଚାରିବେ । ମୋର ଆପଣଙ୍କ ପ୍ରତି ବହୁଦିନରୁ ସଂଚିତ ଭାବ ବିରାଦରୀ ପଣ, ସଜଳ ଭକ୍ତି ଓ ଶ୍ରଦ୍ଧା ମୋତେ ଆଜି ଏକାଦମ୍‌ରେ ଏତେ ବଡ଼ ଚିଠି ଲେଖିବାରେ ସହାୟତା କରିଛି । ମୁଁ ସବୁବେଳେ ଅନ୍ୟର ସୁଖଦୁଃଖରେ ସାଥୀ ହୋଇ ଆସିଛି । ଆପଣଙ୍କ ଭଲବେଳେ କିଛି ତ ମାଗିନି, ଏବେ କିନ୍ତୁ ମାଗୁଛି 'ଇସ୍ତାହାର'କୁ ମରିବାକୁ ଦିଅନ୍ତୁ ନାହିଁ । ଏତେ ପଇସା ରାଜନୀତିରେ ଉଡ଼େଇ ଦେଲେ । କ'ଣ ହେବ ଏ ପଇସା ? ସବୁ ଖର୍ଚ୍ଚ ହୋଇଯାଉ । ସାରା ଓଡ଼ିଶା ଆପଣଙ୍କୁ ଉତ୍ତରାଧିକାର ସମ୍ମାନ ଦେବ । ନିଜକୁ କରି ପାରିଲେ ପଶୁଯନ୍ତୁ ବୋଲି ମାନୁଛନ୍ତି । ଆପଣ କ'ଣ ହାରିଯିବେ ଏଇ ସାମୟିକ ମୋହଭଂଗର ଅସନ୍ତୁଳିତ ପ୍ରବଂଚନାର ଆଘାତରେ? ଆପଣତ ପତ୍ରିକାକୁ ମାରିଦେବେ-ପୁଣି ଏକହଜାର ବାର୍ଷିକ ଗ୍ରାହକର ଆଶା ରଖୁଛନ୍ତି କାହିଁକି?

ମୁଁ ବିନମ୍ରତାର ସହ ଅନୁରୋଧ କରୁଛି ଆପଣ ଅନ୍ତତଃ ଇସ୍ତାହାରର ଆକସ୍ମିକ ମୃତ୍ୟୁ ସଂବାଦରେ ବ୍ୟଥିତ ଓଡ଼ିଆ ସାହିତ୍ୟିକମାନଙ୍କର ମତାମତକୁ ୨୫ ତାରିଖ ମଧ୍ୟରେ ଏକତ୍ର ପ୍ରକାଶିତ କରାନ୍ତୁ । ଦେଖିବେ ଏଇ ନାଟକର ଶେଷ ଦୃଶ୍ୟରୁ ଆରମ୍ଭ ହେବ 'ଇସ୍ତାହାର'ର ନବପର୍ବ । ମଣିଷର ବିଶ୍ୱାସବୋଧ, ନିଷ୍ଠା, ଆତ୍ମସମୀକ୍ଷା ତାଙ୍କୁ ନୂଆ ରାସ୍ତାରେ ଚଲାଇବାକୁ ପଥ ନିର୍ଦ୍ଦେଶ କରିବ । ମୁଁ ଆପଣଙ୍କର ସଂଜୟ ନୁହେଁ କିମ୍ବା ଭବିଷ୍ୟତର ଦ୍ରଷ୍ଟା ସହଦେବ ନୁହେଁ । ମୁଁ ତ ସବୁଦିନେ ଅଭିମନ୍ୟୁର ଯନ୍ତ୍ରଣାଦଗ୍ଧ ଲଢ଼େଇ କରା ଆତ୍ମବଳିର କ୍ଷତାକ୍ତ ମଣିଷଟିଏ । ତେଣୁ 'ଇସ୍ତାହାର'ର ଶାରଦୀୟ ୨୦୦୩ "ନିର୍ବାଣ ମୁଖୀ ପ୍ରଦୀପର ଶେଷ ଦୀପ ଶିଖା" ନ ହୋଇ ଏକବିଂଶ ଶତାବ୍ଦୀର ନବ୍ୟଚେତନାର ବାର୍ତ୍ତାବହ ହେଉ ବୋଲି ଆଶା କରିବି । ଜଣେ ଅଭିଜ୍ଞ କାଣ୍ଡାରୀ ସାଜି ପ୍ରତିକୂଳରେ ଆଗେଇ ଚାଲନ୍ତୁ । ଦେଖିବେ ସବୁ ସ୍ରୋତ ହାର ମାନିଯିବ । କବି ବ୍ରଜନାଥ ରଥଙ୍କ ଭାଷାରେ ଆପଣ ସେଇ ଅଧାଉପୁଡ଼ା ବରଗଛ । ଆପଣ ବଂଚନ୍ତୁ ଅନ୍ୟଏକ ଝଡ଼ର ପ୍ରତୀକ୍ଷାରେ ।

ଇତି
ବିନୟାବନତ
ସଦାଶିବ ଦାଶ

ଜଣେ ଅପରିଚିତା ମହିଳାଙ୍କ ଲେଖନୀରୁ ତା. ୦୯.୧୦.୦୩

ପୂଜନୀୟଙ୍କୁ,

ମୋର ଭୂମିଷ୍ଠ ପ୍ରଣାମ । ଆଜି ଇସ୍ତାହାରର ସଂପାଦକୀୟ ପଢ଼ି ଏତେ ଦୁଃଖ ଲାଗିଲା ମୁଁ ଏ ଚିଠି ଲେଖାରୁ ନିଜକୁ ଦୂରେଇ ପାରିଲି ନାହିଁ । ହଁ ମୁଁ ଇସ୍ତାହାରର ୨୦ ବର୍ଷର ପାଠିକା । ପତ୍ରିକା ଭଲ ହେଇଥିଲେ ଖୁସି ହୁଏ । ମନକୁ ନପାଇଲେ ତୋଷାମଦି ଚାଲିଛି ଏମିତି କିଛି ଚିନ୍ତାକରି ବହିଯୋଇଦିଏ । ନିଜର ମତାମତ କେବେବି ଜଣାଇନି । ସେଥିପାଇଁ ପ୍ରଥମେ କ୍ଷାମା ମାଗି ନେଉଛି (ନିଜର ସ୍ୱାର୍ଥପରତା ପାଇଁ) ।

ଇସ୍ତାହାରରୁ କାହିଁକି ଦୂରେଇଯିବେ? ଏଇ କିଛି ସ୍ୱେଛାଚାରୀ ଲୋକଙ୍କ ପାଇଁ? ଏଇଟା ଠିକ୍ ହେବନି । ସାହିତ୍ୟରେ କେବେବି ପ୍ରତିଯୋଗିତା ନଥିଲା ଏବେ ବି ନାହିଁ । ମୁଁ କହିପାରିବିନି ମୁଁ ପୁରୁଷକୁ କାହିଁକି ଶ୍ରେଷ୍ଠ ସ୍ଥାନ ଦିଏ । ମୋ ପାଇଁ ପୁରୁଷ ଈଶ୍ୱର, ପୁରୁଷ ହିଁ ଶ୍ରେଷ୍ଠ ମତେ ଯେତିକି ବର୍ଷ ସେଇ ବୟସ ଭିତରେ ମୁଁ ପୁରୁଷକୁ କେବେ ଖରାପ୍ ଦେଖିନି । ପ୍ରତ୍ୟେକ କ୍ଷେତ୍ରରେ ନାରୀ ହିଁ ପୁରୁଷକୁ ତଳିତଳନ୍ତ କରିଥାଏ । ନାରୀବାଦୀ କବି ଲେଖକ ମାନଙ୍କୁ ମୁଁ ବିଶ୍ୱାସ କରେ ନାହିଁ । ମୋ ଠାରୁ କେହି କେବେ କିଛି ଚିଠି ପାଇଥିଲେ ଏଥି ବିରୁଦ୍ଧରେ ନିଶ୍ଚୟ ପାଇଥିବେ ।

ଆପଣ ଆଜି କାହାପାଇଁ ଇସ୍ତାହାର ଛାଡ଼ିବେ ? ଯିଏ ଆପଣଙ୍କର କେବେବି ନିଜର ନଥିଲେ ? ଯେଉଁ ସିଡ଼ିରେ ମଣିଷ ଶିଖରକୁ ଯାଇଥାଏ ସେ ସିଡ଼ିକୁ ଟିପମାରି ଠେଲିଦେବା ମଣିଷ କେବେ ବି ସିଡ଼ିର ଥିଲା ବୋଲି କହି ପାରିବା କି ?

ଆପଣଙ୍କ ଆଖିକଥା ଜାଣି ବହୁତ ଦୁଃଖ ହେଉଛି । ବର୍ଷକୁ ଯେତିକିଟି ବି ପ୍ରକାଶ ପାଉ ଆପଣଙ୍କ ଆଶୀର୍ବାଦରୁ ହେଉ । ଆପଣ କିଛି ସାହିତ୍ୟକୁ ଭଲ ପାଉଥିବା ମଣିଷକୁ ନେଇ ଚଳାନ୍ତୁ । ଆପଣ ଏମିତି ଭାଙ୍ଗି ପଡ଼ିଲେ କେମିତି ହେବ ? ଗତବର୍ଷ ପତ୍ରିକାଟି (ପୂଜାସଂଖ୍ୟା)ଚଉଡ଼ା ହେଇ ମୋଟା ହେଇଥିଲାବୋଲି ପଢ଼ିବାକୁ କଷ୍ଟ ହେଉଥିଲା । ଏଥରକ ବଢ଼ିଆ ହେଇଛି । ଆଜି ଇସ୍ତାହାରକୁ ଚିଠି ଲେଖୁଛି ଆପଣଙ୍କ ପାଇଁ । ଇତି

ନେହା

ଆଚାରୀ ବଗିଚା, ବଡ଼ଶଙ୍ଖ, ପୁରୀ-୨

ପୂଜ୍ୟ ସଂପାଦକ ମହାଶୟ, କଟକ, ୧୨.୧୦.୦୩

ନମସ୍କାର, ଜଣେ ଓଡ଼ିଆ ଭାବରେ ଓଡ଼ିଆ ଭାଷା ଓ ସଂସ୍କୃତି ପ୍ରତି ମୋର ସହଜାତ ଆନୁଗତ୍ୟ ରହିବା ସ୍ୱାଭାବିକ । ଜ୍ଞାନୀ, ବିଦ୍ୱାନ, ଗବେଷକ ଏବଂ ଶିକ୍ଷାବିତ୍‌ଙ୍କ ଦୃଷ୍ଟିରେ 'ଇସ୍ତାହାର' ପରିପୁଷ୍ଟ । ଯାହା ଜ୍ଞାନବର୍ଦ୍ଧକ ତାହା ସର୍ବଥା ଆଦରଣୀୟ ଏବଂ ଶାନ୍ତି ପ୍ରଦାୟକ ।

"ଜ୍ଞାନଂ ଲବଧ୍ୱା ପରାଂ ଶାନ୍ତିମଚିରେଣାଧିଗଚ୍ଛତି ।" ପବିତ୍ର ଗୀତା ।

ଓଡ଼ିଆ ପତ୍ରିକା ସର୍ବଦା ଝଡ଼ ଝଞ୍ଜା ଏବଂ ଆର୍ଥିକ ଅନାଟନ ଦେଇ ଗତି କରିଥାଏ । ଯେଉଁମାନେ ଅହୋରାତ୍ର ତ୍ୟାଗ ସ୍ୱୀକାର କରି ଓଡ଼ିଆ ଭାଷାର ସମୃଦ୍ଧି ପାଇଁ ପ୍ରତ୍ୟାଶାହୀନ ଭାବେ କାର୍ଯ୍ୟରତ ଏ ଜାତି ସେମାନଙ୍କ ପ୍ରତି କୃତଜ୍ଞ ରହିବା ଉଚିତ ।

ଓଡ଼ିଆ ଭାଷା ଏବଂ ସାହିତ୍ୟକୁ 'ଇସ୍ତାହାର'ର ଦାନ ଅତୀବ ପ୍ରଶଂସନୀୟ ।

ଆପଣଙ୍କର ବଳିଷ୍ଠ ନେତୃତ୍ୱ, ଦିଗ୍‌ଦର୍ଶନ ଏବଂ ଆପଣଙ୍କ ସହକର୍ମୀମାନଙ୍କର ନିଷ୍ଠାପର ଉଦ୍ୟମ 'ଇସ୍ତାହାର'କୁ ଅଗଣିତ ପାଠକଙ୍କ ନିକଟରେ ଆଦୃତ କରିପାରିଛି ।

ଏହିପରି ସମୟରେ 'ଇସ୍ତାହାର' ଶାରଦୀୟ ବିଶେଷାଙ୍କ ସମ୍ପାଦକୀୟ ଲେଖାଟି ଆମ୍ଭମାନଙ୍କୁ ଆଶ୍ଚର୍ଯ୍ୟ ଏବଂ ହତବାକ କରିଛି ।

ଓଡ଼ିଆ ଭାଷା ଏବଂ ସଂସ୍କୃତିର ସ୍ୱାର୍ଥ ପାଇଁ ଏବଂ ଅଗଣିତ ପାଠକ ପାଠିକାଙ୍କ ହିତ ସାଧନ ପାଇଁ 'ଇସ୍ତାହାର' ପ୍ରକାଶନ ବନ୍ଦ କରିବାର କଠିନ ନିଷ୍ପତ୍ତି ପ୍ରତ୍ୟାହାର କରିନିଅନ୍ତୁ ଏବଂ ପୂର୍ବପରି ନୂତନ 'ଇସ୍ତାହାର'ମାନ ଉପଲବ୍ଧ ହେଉ । ଏହା ହିଁ ମୋର ବିନମ୍ର ନିବେଦନ ।

"ଓଡ଼ିଆକୃତିର ମଣିମୁକ୍ତାହାର
ଚିରଂଜୀବୀ ହେଉ ପ୍ରିୟ 'ଇସ୍ତାହାର'

ଇତି

ସସମ୍ମାନେ ଆପଣଙ୍କର ଶ୍ରୀ ପରୀକ୍ଷିତ ମିଶ୍ର

ବଳଭଦ୍ରପୁର ଶାସନ, ଭଦ୍ରକ

ପ୍ରାପକ: ସମ୍ପାଦକ, ଇସ୍ତାହାର, ଭୁବନେଶ୍ୱର ୧୩.୧୦.୦୩

ପ୍ରିୟ ମହାଶୟ,

ଚଳିତ ପୂଜାସଂଖ୍ୟାର ସଂପାଦକୀୟଟି ପଢ଼ି ମୁଁ ବିଶେଷ ଭାବରେ ମର୍ମାହତ। ବିଭିନ୍ନ ଲେଖା ମାଧ୍ୟମରେ ପତ୍ରିକାଟିର ସୁଦୀର୍ଘ କଳେବର ଖୁବ୍ ସମୃଦ୍ଧ ଓ ସମୃଦ୍ଧ ହୋଇଛି। ଆଉ, ଖୁବ୍ ହୃଦ୍ୟ ଓ ସ୍ୱାଦ୍ୟ ବି। ସେଗୁଡ଼ିକ ପଢ଼ିବାରେ ଯେତିକି ଆନନ୍ଦ ପାଇଲି, ତାହାଠାରୁ ବେଶି ଦୁଃଖ ପାଇଲି ସଂପାଦକୀୟଟିକୁ ପଢ଼ି ଯହିଁରେ ଆପଣ ପତ୍ରିକାଟିର ମୃତ୍ୟୁ-ଘଣ୍ଟି ଶୁଣାଇଛନ୍ତି। ସତରେ ବିଶ୍ୱାସ କରି ହୁଏନା ପତ୍ରିକାଟି ବନ୍ଦ ହୋଇଯିବ ବୋଲି! ପ୍ରିୟଜନର ଆସନ୍ନ ବିରହକୁ ବିଶ୍ୱାସ କରି ହୁଏନା ଯେମିତି!

ଯେଉଁ ଇସ୍ତାହାର ଦୀର୍ଘ ପଚିଶ ବର୍ଷ ଧରି ଓଡ଼ିଆ ସାହିତ୍ୟର ଉଚ୍ଚ ପରଂପରାକୁ ଟେକି ଧରିବାପାଇଁ ଅଦମ୍ୟ ଓ ନିରବଛିନ୍ନ ଉଦ୍ୟମ କରୁଥିବା ଅବସରରେ ନିତ୍ୟ-ନୂତନ ଇସ୍ତାହାର ପରେ ଇସ୍ତାହାର ଶୁଣାଇ ଆସିଥିଲା, ତାହା କ'ଣ ହଠାତ୍ ଏମିତି ଅସମୟରେ ମରିଯିବ? ବିଶେଷ କରି ଏକବିଂଶ ଶତାବ୍ଦୀର ଆରମ୍ଭ ଦଶକରେ, ଓଡ଼ିଆ ସାହିତ୍ୟ ପାଇଁ ଅନେକ କିଛି ସମ୍ଭାବନାର ଦ୍ୱାର ଧୀରେ ଧୀରେ ଖୋଲିବାକୁ ଯାଉଛି? ଯଦି ମରିଯାଏ, ତେବେ ଓଡ଼ିଆ ସାହିତ୍ୟର ପତ୍ରିକାଜଗତ ପ୍ରତି ଏହା ଏକ ଦାରୁଣ ଧକ୍କା ହେବ। ଅନେକ ପତ୍ରିକା ଆସିଛନ୍ତି ଓ ଯାଇଛନ୍ତି। ଅନେକ ଏମିତି ଆସୁଥିବେ ଓ ଯାଉଥିବେ। ସେହି ନିୟମକୁ ଅନୁସରଣ କରି 'ଇସ୍ତାହାର' କ'ଣ ଏମିତି ଚାଲିଯିବ ତାହାର ମଧ୍ୟାହ୍ନ ଲଗ୍ନରେ? ପୁଣି ଆପଣଙ୍କ ଜୀବଦଶାରେ? ଏହି ବ୍ୟଥା ଓ ବେଦନା ଆପଣଙ୍କୁ ନିଶ୍ଚୟ ଘାରିଛି ଯାହାର କରୁଣ ସ୍ୱର, ଅନୁରଣିତ ସଂପାଦକୀୟର ପ୍ରତ୍ୟେକଟି ପଙ୍କ୍ତିରେ। ମୁଁ ବି ଆପଣଙ୍କ ସାଥୀରେ ସମବ୍ୟଥୀ।

ଓଡ଼ିଶାର ଅବସ୍ଥା ଯେମିତି, କେବଳ କତିପୟ ପାଠକ ପାଠିକାଙ୍କ ପ୍ରୋତ୍ସାହନ ଦ୍ୱାରା ପତ୍ରିକାଟିଏ ବଞ୍ଚି ରହିବା କଷ୍ଟକର। ତାହା ସତ୍ତ୍ୱେ ତ ଗତ ପଚିଶ ବର୍ଷ ଧରି ଇସ୍ତାହାର ବଞ୍ଚି ରହିଛି। ଆଉ ଅଧିକ ଦିନ ବଞ୍ଚିରହିବ ନାହିଁ କାହିଁକି? ସମ୍ଭ୍ରାନ୍ତ ପତ୍ରିକାମାନଙ୍କ ଗ୍ରାହକସଂଖ୍ୟା ନିଶ୍ଚିତ ଭାବରେ ମୁଷ୍ଟିମେୟ ଓ ସମ୍ଭ୍ରାନ୍ତ ପାଠକମାନଙ୍କ ମଧ୍ୟରେ ସୀମିତ। ଇସ୍ତାହାରକୁ ବଞ୍ଚାଇ ରଖିବା ପାଇଁ ତେଣୁ ଆହୁରି ଉଦ୍ୟମ ଦରକାର। ଆହୁରି ସଂଘର୍ଷ ଦରକାର। ଆହୁରି ତ୍ୟାଗ ଦରକାର। ଆହୁରି ଅଧିକ ସଂଖ୍ୟକ ପ୍ରୋତ୍ସାହନ ତଥା ସହାୟକ ଦରକାର। ମୋର ଆଶା ଓ ବିଶ୍ୱାସ ଯେ ଆପଣ ବଞ୍ଚି ଥାଉ ଥାଉ ଆପଣଙ୍କ ଲାଳିତ-ପାଳିତ ମାତ୍ର ପଚିଶ ବର୍ଷର ମାନସ ସନ୍ତାନଟିକୁ ଅସମୟରେ ଆଖି ବୁଜିବାକୁ ଦେବେ ନାହିଁ। ଏଥିରେ ଆପଣତ ନିଶ୍ଚୟ ଦୁଃଖ ପାଇବେ। ଓଡ଼ିଶାର ପାଠକମାନେ ବି ଦୁଃଖ ପାଇବେ। ବରଂ ଆପଣ ଚେଷ୍ଟା କରନ୍ତୁ ଏହାକୁ ବଞ୍ଚାଇ ରଖିବା ପାଇଁ ଓ ଅଧିକରୁ ଅଧିକ ଉନ୍ନତିର ପାହାଚରେ ଚଢ଼ାଇବା ପାଇଁ।

ଯେଉଁ ପାରିବାରିକ କାରଣରୁ ଆପଣ ପତ୍ରିକାଟିକୁ ବନ୍ଦ କରିଦେବାର ନିଷ୍ପତ୍ତି ଦେଇଛନ୍ତି ଓ ତାହା ଯେପରି ଭାବରେ ଉପସ୍ଥାପିତ କରିଛନ୍ତି, ତାହା ଏକାନ୍ତ ଦୁଃଖଦ। ମୋର ଭଗବାନଙ୍କ ନିକଟରେ ପ୍ରାର୍ଥନା, ସେହି କାରଣ ଶୀଘ୍ର ଦୂର ହେଉ ଓ ଆପଣଙ୍କ ବ୍ୟକ୍ତିଗତ, ପାରିବାରିକ ଓ ସାରସ୍ୱତ ଜୀବନ ମଙ୍ଗଳମୟ ହୋଇଉଠୁ। ଆହୁରି ବି ପ୍ରାର୍ଥନା ଯେ ପତ୍ରିକାଟି ବଞ୍ଚି ରହିବା ପାଇଁ ଅଧିକତର ଅନୁକୂଳ ବାତାବରଣ ସୃଷ୍ଟି ହେଉ ଯାହା ଫଳରେ ଏଥି ସହିତ ସଂପୃକ୍ତ ଆର୍ଥିକ ସଂକଟକୁ ଆପଣ ଯଥାଶୀଘ୍ର ଅତିକ୍ରମ କରିଯିବେ।

ମୁଁ ଏଇ ଯାହା ଆପଣଙ୍କୁ ଲେଖୁଛି, ତାହା ମୋର ଏକାକୀ ଅନୁଭବ ନୁହେଁ। ମୋ ପରି ଅନେକ ସାହିତ୍ୟପ୍ରେମୀ ପାଠକଙ୍କର ତାହା ହିଁ ଅନୁଭବ। ମୋ'ର ଏକାନ୍ତ ଅନୁରୋଧ ଯେ ଆପଣ ଏଇ ଅନୁଭବ ପ୍ରତି ସମ୍ବେଦନଶୀଳ ହୋଇ କଥାଟିର ପୁନର୍ବିଚାର କରିବେ ଓ ପତ୍ରିକାଟି ବନ୍ଦ କରିବାପାଇଁ ଯେଉଁ ନିଷ୍ପତ୍ତି ନେଇଛନ୍ତି, ତହିଁରୁ ଓହରିଯିବେ।

ଇସ୍ତାହାର ଦୀର୍ଘଜୀବୀ ହେଉ। ଚିରକାଳ ଓଡ଼ିଆ ସାରସ୍ୱତ ଭବନରେ ରତ୍ନପ୍ରଦୀପରେ ଜଳୁଥାଉ। ଇତି

ଆପଣଙ୍କର ଗୁଣମୁଗ୍ଧ

ସୁରେନ୍ଦ୍ରନାଥ ଶତପଥୀ

ମାନ୍ୟବରେଷୁ,                                                    ବାଲେଶ୍ୱର, ୧୦.୧୦.୦୩

ନିତ୍ୟାନନ୍ଦବାବୁ, ନମସ୍କାର ଗ୍ରହଣ କରିବେ। ଇସ୍ତାହାର ୨୫/୪ ସଂଖ୍ୟାର ସଂପାଦକୀୟରେ ଆପଣଙ୍କ ମନୋବେଦନାର ସ୍ୱର ପ୍ରକାଶିତ ହୋଇଛି। ଜଣେ ନିଷ୍ଠାପର ସାହିତ୍ୟ ସେବୀ ଚିରକାଳ ଯନ୍ତ୍ରଣାରେ ଦଗ୍ଧ ହୋଇଥାଏ। ଏ କ୍ଷେତ୍ରରେ ଆପଣ ବା ଏକ ବ୍ୟତିକ୍ରମ ହୁଅନ୍ତେ କାହିଁକି? ଦୁଃଖ ବଳେଇ ପଡ଼ିଲେ କବିଙ୍କ ହୃଦୟ ଅଧିକ ମୁଲାୟମ ହୋଇଯାଏ। ଆପଣ ଜଣେ ପ୍ରଥମ ଶ୍ରେଣୀର କବି ଏବଂ ସମୀକ୍ଷକ। ମୋର ବିଶ୍ୱାସ ଆପଣଙ୍କ ପ୍ରତିଭା କ୍ରମେ ଅଧିକ ବିକଶିତ ହେବ। 'ଉଦ୍‌ଭାସ'ର ଅର୍ଥ କ'ଣ? "ଉଦ୍‌ଭାଷ" ହୋଇଥିଲେ ଉପରକୁ ନିକ୍ଷିପ୍ତ ଭାଷା ଅର୍ଥରେ ହୁଏତ ତାହା ଗୃହୀତ ହୋଇଥାଆନ୍ତା। 'ଭାସ' ଭାସିବା ଅର୍ଥ ପ୍ରକାଶ କରେ। ସାହିତ୍ୟକୁ ଭାସମାନ କରାଇଲେ ସମ୍ପାଦିକାଙ୍କ ପ୍ରତିଭା ପ୍ରକାଶ ପାଇବ କି? ଜଣେ ବକ୍ତା ଫକୀର ମୋହନଙ୍କୁ ବଡ଼ କରିବାକୁ ଯାଇ ଯଦି ରାଧାନାଥଙ୍କୁ ଗାଳି ଦିଅନ୍ତି ତେବେ ସେ ବ୍ୟକ୍ତି ନିନ୍ଦିତ ହୋଇଥାଆନ୍ତି। ଇସ୍ତାହାରକୁ ବୁଡ଼ାଇ 'ଉଦ୍‌ଭାସ' କେତେଦିନ ଭାସି ପାରିବ? ପ୍ରଭୁ ଆପଣଙ୍କୁ ମହୀୟାନ ଜୀବନ ପ୍ରଦାନ କରନ୍ତୁ।   ଇତି

ଶୁଭାନୁଧ୍ୟାୟୀ
ଦୁର୍ଗାପ୍ରସାଦ ପଣ୍ଡା

ମହାଶୟ,                                                    କେନ୍ଦ୍ରାପଡ଼ା, ୧୨.୧୦.୦୩

ଶାରଦୀୟ ପ୍ରଣାମ। ସୃଜନଶୀଳ ସମୀକ୍ଷା ସମୃଦ୍ଧ ତ୍ରୈମାସିକ 'ଇସ୍ତାହାର' ଯେ ସର୍ବାଧିକ ସୌନ୍ଦର୍ଯ୍ୟର ଅଧିକାରୀ ହୋଇଛି, ଏହା ନିଃସନ୍ଦେହ। ସଂପୂର୍ଣ୍ଣ ପଢ଼ିସାରିଲେ ଯାଇ ଏହାର ଗୁଣାତ୍ମକମାନ କଥା କୁହାଯାଇପାରିବ। ଗାଳ୍ପିକ ରବିସ୍ୱାଇଁଙ୍କୁ 'ଇସ୍ତାହାର' ଗଳ୍ପ ପୁରସ୍କାର ଆପଣଙ୍କ ନିରପେକ୍ଷ ବିଚାରର ପରିଚାୟକ। ସଂପାଦକୀୟ ପଢ଼ି ମୋ ପରି ଜଣେ ସଚେତନପାଠକ ମର୍ମାହତ ହେବା ସ୍ୱାଭାବିକ ନୁହେଁ କି! ଲାଗୁଛି, ଗୋଟେ ଗୌରବ ସମ୍ପନ୍ନ ଗିରିଶୃଙ୍ଗ ଗର୍ବର ସହିତ ନିଜ ଦୁର୍ଗପତନକୁ ସମ୍ଭାଷଣ ଜଣାଉଛି। ଦେହ ଅସୁସ୍ଥ ହେତୁ, ବିଳମ୍ବରେ xerox copy ନରଖି ମୁଁ ପଠାଇଥିବା ଗପଟି ପ୍ରକାଶ ପାଇନଥିବାରୁ, ଏବଂ ଏହା ଇସ୍ତାହାରର ଶେଷ ସଂଖ୍ୟା (ସମ୍ଭାବ୍ୟ) ହୋଇଥିବାରୁ, ମୁଁ ଲେଖାଟି ଫେରି ପାଇବା ଆଶା ରଖୁଛି। ଆଶା ଆପଣ ସର୍ବକୁଶଳରେ ଅଛନ୍ତି। ଆଧୁନିକ ଓ ଉଦ୍‌ଭାସ, ଇସ୍ତାହାରର ସମଦୃଷ୍ଟିସମ୍ପନ୍ନ ପତ୍ରିକା ନୁହେଁ। ଆପଣ ଏହା କାହିଁକି ଲେଖିଲେ? ଖରାପ ଭାବିବେ ନାହିଁ। ଇତି

ଆପଣଙ୍କର
ଅରବିନ୍ଦ ଧଳ, କେନ୍ଦ୍ରାପଡ଼ା

ପୂଜ୍ୟ ସଂପାଦକଙ୍କୁ,

ସାରସ୍ୱତ ପ୍ରଣାମ। 'ଇସ୍ତାହାର'ର ପୂଜା ଓ ରଜତ ଜୟନ୍ତୀ ବିଶେଷାଙ୍କ ପଢୁଥିଲି। ତାର 'ସଂପାଦକୀୟ' ପୃଷ୍ଠାଟି ପଢ଼ି ଖୁବ୍ ଦୁଃଖ ଲାଗିଲା। ବିଶ୍ୱାସ କରିବାକୁ ମନ ଯାଉନି। ମନ ଯେମିତି କହୁଛି 'ଇସ୍ତାହାର'ର ଏଇଟା ଶେଷ ନୁହେଁ। ବାସ୍ ନୂଆଭାବେ ଆହୁରି ଆରମ୍ଭ ହେବାକୁ ଯାଉଛି। ମୁଁ ଆଉ କିଛି ବି ଲେଖିପାରିବିନି। ବରଂ ଈଶ୍ୱରଙ୍କ ପାଖରେ ହୃଦୟର ସହ କାମନା କରୁଛି ଏହା ଅଟକି ନ ଯାଉ ଏହାର ଚଲାପଥ ସୁଦୂରପ୍ରସାରୀ ଚନ୍ଦନ ଚର୍ଚ୍ଚିତ ହେଉ। ଏହି ଶୁଭକାମନା ସହ-

ଇତି
ମାଧୁରୀ ପଣ୍ଡା, ସେକ୍ଟର-୨ ବି/୨୮୭
ନାଲ୍‌କୋ, ଦାମନଯୋଡ଼ି, କୋରାପୁଟ

ମାନନୀୟ ସାର୍,

ରାଇରଙ୍ଗପୁର

ତା ୧୪.୧୦.୦୩

ଆପଣଙ୍କର ସାରସ୍ୱତ ପ୍ରତିଭାମୁଗ୍ଧ, ଆପଣଙ୍କ ପାଇଁ ଏକାବେଳକେ ଅଜଣା ଲୋକ ମୁଁ, ଚିଠିଟି ଲେଖୁଚି। ଲେଖୁଚି ଖାସ୍ ଏଇଥି ପାଇଁ ଯେ, ରାଇରଂଗପୁରକୁ ନିୟମିତ ଆସୁ ନଥିବା 'ଇସ୍ତାହାର'ର ମୁଁ ଜଣେ ବିମୁଗ୍ଧ ନିୟମିତ ପାଠକ (ବରଂ ବାରିପଦା, କଟକ ଅଥବା ଭୁବନେଶ୍ୱରରୁ ପତ୍ରିକା ମଗେଇ ଥାଏ ପଛକେ) ଏବଂ ଆପଣଙ୍କଠାରୁ ଅଧିକ (ଅଧିକ କହିବା/ଲେଖିବାଟା ବୋଧହୁଏ ଅଧିକ ହେବ, ହୁଏତ ସମ ପରିମାଣ) ଦୁଃଖୀ ୨୫ ବର୍ଷର/ ଯୌବନ ଉବୁଟୁବୁ ପତ୍ରିକାଟିଏ ଅସମୟରେ କାଳ ସମୁଦ୍ରରେ ବୁଡିଯିବ ଜାଣି। ମୋର ଗୋଟିଏ ବଦ୍ (?) ଅଭ୍ୟାସ ମୁଁ ସମ୍ପାଦକୀୟ ଅଥବା ଲେଖକୀୟ ସ୍ତମ୍ଭ ପ୍ରଥମେ ପଢେ ଓ କେତେକ କ୍ଷେତ୍ରରେ ମନ୍ତ୍ରମୁଗ୍ଧ ହେଲା ସମୟରେ, କେତେବେଳେ ଦୁଃଖୀହୁଏ ବିଭିନ୍ନ କାରଣରୁ କତିପୟ ଆର୍ଥିକ ସ୍ୱଚ୍ଛଳ (ଆପଣଙ୍କ ସମ୍ପାଦକୀୟରେ ଯାହାର ବ୍ୟାଖ୍ୟା କରାଯାଇଚି) ବର୍ଗର ସମ୍ପାଦକଙ୍କ ଉଦ୍ଦଣ୍ଡ ମତ/ମନ୍ତବ୍ୟ ପଢିଲା ପରେ, ଯେଉଁମାନଙ୍କ ଭାଷା ହୁଏତ କହିବାକୁ ଚାହେଁ, ଅଥଚ କହେ ନାହିଁ, "ଦେଖଇ ନେତ୍ର ଯାହା ଚଉଦିଗର... ।"

ସାର୍! ଆପଣତଃଖୁବ୍ କମ୍‌ରେ ଅଧିକ କଥା କହିଛନ୍ତି କିନ୍ତୁ ତାଠାରୁ ସମ୍ଭବତଃ ଅଧିକ ମୁଁ ବୁଝିଚି। ପରିଣତ ବୟସରେ ଅନେକ କଥା ଅନେକ ଦୁଃଖ ଆପେ ଆପେ ବୁଝି ହୋଇଯାଏ। ପିଲାଟି ବେଳରୁ ଲେଖା ଲେଖିରେ ସଉକ ରଖି ଗଳ୍ପ ବା କବିତାଟିଏ କୋଉ ପତ୍ରିକାରେ ଛପା ହେବା ଦେଖିଲେ ସେ ବୟସରେ ଶହେ ଜଣଙ୍କୁ ଦେଖଉଥିବା ଲୋକ ମୁଁ। ଦି'ବର୍ଷ ହେଲାଣି ସରକାରୀ ଚାକିରୀରୁ ଅବସର ନେଇଚି। ୟାରି ଭିତରେ କେବଳ 'ଜନ ସାହିତ୍ୟ'ରେ ନଅଟି ଉପନ୍ୟାସ ପ୍ରକାଶିତ ହୋଇଚି। ଆଠଟି ନାଟକ ଲେଖି ମଞ୍ଚସ୍ଥ କରିଚି। ଏବେ ବି ଲେଖା ଲେଖି ସଉକ ଛାଡି ନାହିଁ (ଝଙ୍କାର, ଅମୃତାୟନ, ନବଲିପି, ପ୍ରତିବେଶୀ, ବିଶ୍ୱମୁକ୍ତି ଇତ୍ୟାଦିରେ ସାମୟିକ ଭାବେ ଗଳ୍ପ/ଏକାଙ୍କିକା ପ୍ରକାଶ ପାଉଚି) ଅଥଚ ସେଇଥି ପାଇଁ ଘରୁ ଗାଳି ଶୁଣିବାକୁ ପାଉଚି, ଲେଖା ଲେଖି କଲେ ଲୋକ ଅଳସୁଆ ହେଇଯାଏ, ଯିଏ ଲେଖେ ସିଏ ମୂର୍ଖ କାରଣ ତା ଲେଖା କେହି ପଢନ୍ତି ନାଇଁ ବା କିଛି ମୂର୍ଖ ଲୋକ ପଢନ୍ତି ଆଉ ଭୁଲି ଯାଆନ୍ତି। ଅଭିମାନ କରି ପାଞ୍ଚ ଦିନ ତଳେ ମୋ କ୍ୱାର୍ଟର୍ସରୁ (ଯାହା ମୁଁ ଏବେ ବି ଛାଡି ନାଇଁ, କାରଣ ମୋ ସାନଝିଅ ରାଇରଂଗପୁର ଏନ. ଏ.ସି.ର ଭାଇସ୍ ଚେୟାରପର୍ସନ ଥିବା ସମୟରେ କ୍ୱାର୍ଟର୍ସଟି ତା ନାଁରେ allot ହୋଇଥିଲା ଏବଂ ଏବେ ଚେୟାରପର୍ସନ ହେଲା ପରେ ସମ୍ଭବତଃ କ୍ୱାର୍ଟର୍ସଟି ଛାଡିବାକୁ ପଡି ନପାରେ) ମୋ ଘରକୁ (କ୍ୱାର୍ଟର୍ସ ପାଖରୁ ତିନି କିଲୋମିଟର ଦୂର, ଏନ୍.ଏ.ସି. ଭିତରେ, ଯୋଉଠି ବଡପୁଅ ବୋହୂ ରହନ୍ତି) ଚାଲି ଯାଇଥିଲି। ଆପଣଙ୍କର ଶେଷ 'ଇସ୍ତାହାର'ଟିଏ କିଣିଲା ପରେ ପୁଣି ଆଜି ଫେରି ଆସିଚି, କେହି ଡାକି ନାଇଁ, ଆପେ ଆପେ। ପରିଣତ ବୟସରେ ମାନସିକ ଦୁଃଖ ସମ୍ଭବତଃ ଅଧିକ ବାଧେ। ଯନ୍ତ୍ରଣା ଦାୟକ ହୁଏ। ଅନ୍ୟକୁ କହି ହୁଏ ନାଇଁ, ଇମିତିକି ମାନସ ସନ୍ତାନର ଅପମୃତ୍ୟୁ କଥା ବି। ମାଡାମ୍ ଆଉ ପାରମିତାଜୀ ଥାଉ, ଥାଉ, ଇସ୍ତାହାରକୁ ଲୋକେ ଶେଷ ଇସ୍ତାହାରରେ ପରିଣତ ହେବାର ଦୁର୍ଯୋଗ ସତରେ କ'ଣ ଦେଖିବେ?

ଆପଣଙ୍କ ଦୁଃଖରେ, ଗୋଟିଏ ଓଡିଆ ପତ୍ରିକାର ଅପମୃତ୍ୟୁରେ ବ୍ୟଥିତ ହେବା ବ୍ୟତୀତ କିଛି କରି ପାରୁ ନାଇଁ। ତଥାପି ମନର କୋଉ କୋଣରେ ଆଶା ଟିକିଏ ଏବେ ବି ଅଛି, ଭୁବନେଶ୍ୱରରେ ରହୁଥିବା କିଛି ସୁହୃଦ ପାଠକ, କୋଉ ସାହିତ୍ୟ ପ୍ରେମୀଙ୍କ ନଜରରେ ଏ ସଂପାଦକୀୟ ପଡିଥିଲେ, ଲେଖାର ଗୁରୁତ୍ୱ, ଲେଖକଙ୍କ (ସଂପାଦକଙ୍କ) ଦୁଃଖ ସେମାନେ ଅନୁଭବ କରି ପାରୁଥିବେ; ହୁଏତ ନୂଆବର୍ଷରେ 'ଇସ୍ତାହାର' ପୁନଶ୍ଚ ପ୍ରକାଶ ପାଇବ।

ବେଶୀ ଲେଖି ଦେଲି। ପଢିବାକୁ ସମୟ ପାଇବେ ନାହିଁ। କ୍ଷମା ମାଗି ନେଉଚି।

ଗଭୀର ସମ୍ମାନ ସହ

ଆପଣଙ୍କର ଗୁଣମୁଗ୍ଧ

ବିପିନ୍ କାନୁନଗୋ

# ଅନେକ ସଫଳ ସ୍ୱପ୍ନଙ୍କ ଘର : 'ଇସ୍ତାହାର'

## ଯାଜପୁରରେ 'ଇସ୍ତାହାର' ରଜତ ଜୟନ୍ତୀ ସମାରୋହ (୩)

★ ରମେଶ ପତି



ଯାଜପୁର ଠାରେ 'ଇସ୍ତାହାର' ରଜତ ଜୟନ୍ତୀ ଉତ୍ସବରେ ବାମରୁ ଦକ୍ଷିଣକୁ-କବି ରମେଶ ପତି, ପ୍ରଫେସର ନିତ୍ୟାନନ୍ଦ ଶତପଥୀ, ଡଃ. ପ୍ରଫୁଲ୍ଲ ମହାନ୍ତି ଓ ଗାଳ୍ପିକ ଅଚ୍ୟୁତାନନ୍ଦ ପତି

ଯେତେବେଳେ ଆଧୁନିକ ଓଡ଼ିଆ ସାହିତ୍ୟ ଦିଗହରା ହୋଇ ଘନ କୁହୁଡ଼ିର ଆସ୍ତରଣ ମଧ୍ୟରେ ନିଜକୁ ଚିହ୍ନିବାକୁ ଚେଷ୍ଟା ଜାରି ରଖିଥିଲା ଏବଂ ତତକାଳୀନ ଆଧୁନିକ ସାହିତ୍ୟକୁ ଓଡ଼ିଆ ପାଠକମାନେ ଗ୍ରହଣ କରୁନଥିଲେ ବିଶେଷକରି କାବ୍ୟ କବିତାର ଆବରଣ ଭେଦକରି ତାର ରସ ଆସ୍ୱାଦନ କରିପାରୁନଥିଲେ ଯେଉଁ କେତେକଣ ବୁଦ୍ଧିଜୀବୀ ଆଧୁନିକତା ସଂପର୍କରେ ସୂଚନା ଦେଉଥିଲେ ବା ଯୁକ୍ତି ଦର୍ଶାଉଥିଲେ, ସେ ସବୁକୁ ପାଠକ ସମାଜ ସହଜରେ ଗ୍ରହଣ କରୁନଥିଲେ କି ତତ୍କାଳୀନ ପତ୍ରପତ୍ରିକାମାନେ ପ୍ରକାଶିତ କରିବାକୁ କୁଣ୍ଠିତ ହେଉଥିଲେ ଠିକ୍ ସେହି ଘଡ଼ିସନ୍ଧି ମୁହୂର୍ତ୍ତରେ 'ଇସ୍ତାହାର' ଏକ ଆଲୋଚନା ପତ୍ରିକା ରୂପରେ ୧୯୭୮ରେ ଜନ୍ମନେଲା । ତାର ଯେଉଁ କେତୋଟି ପ୍ରମୁଖ ଆଭିମୁଖ୍ୟ ଥିଲା ସେଥିମଧ୍ୟରୁ ଆଧୁନିକ ଓଡ଼ିଆ ସାହିତ୍ୟକୁ ପାଠକମାନଙ୍କ ନିକଟତର କରିବା ଥିଲା ମୁଖ୍ୟ । ସେହି ଲକ୍ଷ୍ୟ ବା ଆଭିମୁଖ୍ୟ ଏବେ ଫଳବତୀ ହୋଇଛି । ଆଧୁନିକ କାବ୍ୟକବିତାର ମାର୍ଗ ପରିବର୍ତ୍ତିତ ହୋଇ ଏବେ ଜଟିଳରୁ ସରଳତା ଆଡ଼କୁ ଗତି କରିଛି ।

ଦୀର୍ଘ ପଚିଶ ବର୍ଷର ଐତିହାସିକ ଯାତ୍ରା ମଧ୍ୟରେ ସମ୍ଭ୍ରାନ୍ତ ସାହିତ୍ୟପତ୍ରିକା 'ଇସ୍ତାହାର'ର ୯୦ଟି ସଂଖ୍ୟା ପାଠକମାନଙ୍କ ନିକଟରେ ପହଞ୍ଚି ପାରିଛି । ଏହି ପତ୍ରିକାର ପ୍ରତିଷ୍ଠାତା ତଥା ସୁଯୋଗ୍ୟ ସଂପାଦକ ସମାଲୋଚକ ପ୍ରଫେସର ନିତ୍ୟାନନ୍ଦ ଶତପଥୀଙ୍କ ସହ ଯାଜପୁରର ଏକ ସାହିତ୍ୟ ସଭାରେ ସୌଜନ୍ୟ ସାକ୍ଷାତ ହୋଇଥିଲା । କିନ୍ତୁ ସେତେବେଳେ 'ଇସ୍ତାହାର' ପ୍ରସଙ୍ଗରେ କୌଣସି ଆଲୋଚନା ହୋଇନଥିଲା । ଯେତେବେଳେ ଇସ୍ତାହାରର ରଜତଜୟନ୍ତୀ ପାଳନ ନିମନ୍ତେ ଯୋଜନା ପ୍ରସ୍ତୁତ କରାଗଲା ଜଣାଗଲା ଯେ ଏହାର ରଜତ ଜୟନ୍ତୀ, ପାରାଦୀପ, ରାଉରକେଲା, ବାଲେଶ୍ୱର ଓ ଭୁବନେଶ୍ୱରରେ ମହାସମାରୋହରେ ପାଳିତ ହେବ ଏବଂ ପ୍ରତ୍ୟେକ ସଂଖ୍ୟା ଏକ ସ୍ୱତନ୍ତ୍ର ସଂଖ୍ୟା ରୂପେ ପ୍ରକାଶ ପାଇବ ଏପରି ଏକ ଅଭିନବ ଯୋଜନା ଥିଲା ସଂପୂର୍ଣ୍ଣ ନୂତନ ପରିକଳ୍ପନା । ଏଭଳି ପଦକ୍ଷେପ ଏ ରାଜ୍ୟରେ ଆଗରୁ କୌଣସି ପତ୍ରିକା ନେଇଥିବାର ନଜିର ନାହିଁ ।

ପାରାଦୀପ ଓ ରାଉରକେଲା ଠାରେ 'ଇସ୍ତାହାର' ରଜତ ଜୟନ୍ତୀ ସମାରୋହ (୧) (୨) ସଫଳ ହେବା ପରେ ପ୍ରଫେସର ନିତ୍ୟାନନ୍ଦ ଶତପଥୀ ମହୋଦୟଙ୍କ ସହ ମୋର ସାକ୍ଷାତ ହେଲା । ପତ୍ରିକାର ପ୍ରସାର ନିମିତ୍ତ ସେ ତହ ତହ ଖରାରେ ଓଦା ଗାମୁଛା ଭିଡ଼ି ମୋ ସହ ଯାଜପୁରର ବିଭିନ୍ନ କୋଣ ଅନୁକୋଣ ବୁଲି ବାର୍ଷିକ ସଭ୍ୟ ସଂଗ୍ରହ କରିଥିଲେ । ସର୍ବପ୍ରଥମେ କୋରେଇର ନନ୍ଦକିଶୋର ସିଂହଙ୍କ ଠାରୁ ଆରମ୍ଭ କରି ଗାଳ୍ପିକ ଅଚ୍ୟୁତାନନ୍ଦ ପତିଙ୍କଠାରେ କାର୍ଯ୍ୟ ସମାପନ କରିଥିଲୁ । ଅବଶ୍ୟ ଦୁଇଟି ପର୍ଯ୍ୟାୟରେ ଏହି କାର୍ଯ୍ୟ ଶେଷ ହୋଇଥିଲା । ସେହି ଅବସରରେ



ସଂପାଦକ ମହୋଦୟଙ୍କୁ ଅନୁରୋଧ କରିଥିଲି 'ଇସ୍ତାହାର'ର ରଜତ ଜୟନ୍ତୀ ସମାରୋହ (୩) ଯାଜପୁରରେ ପାଳନ କରିବାକୁ । ସେ ମଧ୍ୟ ମୋ ପ୍ରସ୍ତାବକୁ ହୃଦୟଙ୍ଗମ କଲେ । ଏହି ସମାରୋହ ଯାଜପୁରରେ ପାଳିତ ହେବ ସତ ମାତ୍ର ଏଥିପାଇଁ ଆବଶ୍ୟକୀୟ ଅର୍ଥ ଆସିବ କେଉଁଠୁ? ଏହା ମଧ୍ୟ ଏକ ବିରାଟ ସମସ୍ୟା ଥିଲା ।

ସେତେବେଳେ ଗ୍ରୀଷ୍ମ ପ୍ରବାହ ଅବ୍ୟାହତ । ଝାଂଜି ପବନର ପ୍ରବାହ ହେତୁ ଅଣନିଃଶ୍ୱାସ ହୋଇଯାଉଛି ମଣିଷ । ପ୍ରଚଣ୍ଡ ତାତିରେ ଗଛପତ୍ର ମଧ୍ୟ ଝାଉଁଳି ଯାଉଛି । ସେସବୁକୁ ଖାତିର ନକରି ପ୍ରଫେସର ଶତପଥୀଙ୍କୁ ମଟରସାଇକେଲ ପଛରେ ବସାଇ ଯାଜପୁର ଜିଲ୍ଲା ପରିଷଦର ଅଧ୍ୟକ୍ଷ ଗୌତମ ରାୟଙ୍କୁ ଭେଟିଲୁ । ଆମର ଯୋଜନା ଓ ପରିକଳ୍ପନା ସଂପର୍କରେ ଅବଗତ ହୋଇ ଆଗାମୀ ସମାରୋହର କିଛି ଖର୍ଚ୍ଚ ବହନ କରିବାକୁ ସେ ପ୍ରତିଶ୍ରୁତି ଦେଲେ । ଯାହାହେଉ ସମ୍ମିଳନୀଟି ବିରଜା ଭୂମିରେ ଅନୁଷ୍ଠିତ ହେବ ଏହି ଆଶା ମୋ ମନରେ ଦୃଢୀଭୂତ ହେଲା । ଠିକ୍ ସେହିଦିନ ଯାଜପୁରର କେତେକ ପ୍ରମୁଖ ସାହିତ୍ୟିକ ଓ ବୁଦ୍ଧିଜୀବୀଙ୍କୁ ନେଇ ଏକ ଅଭ୍ୟର୍ଥନା କମିଟି ଦଶରଥପୁରଠାରେ ଗଠିତ ହେଲା । ଉପସ୍ଥିତ ସମସ୍ତ ସଭ୍ୟ/ସଭ୍ୟା, ସମ୍ମିଳନୀର ସମସ୍ତ ଦାୟିତ୍ୱ ମୋ ଉପରେ ନ୍ୟସ୍ତ କଲେ । ଅର୍ଥାତ୍ ମତେ ଅଭ୍ୟର୍ଥନା କମିଟିର ସଂପାଦକ ଦାୟିତ୍ୱ ତୁଲାଇବାକୁ ପଡିଲା ଏବଂ କମିଟିର ଅଧ୍ୟକ୍ଷ ଭାବରେ ଗୌତମ ରାୟଙ୍କୁ ମନୋନୀତ କରାଗଲା । ସ୍ଥିର ହେଲା 'ସବୁଜ ସାହିତ୍ୟ ସଂସଦ' ଆନୁକୂଲ୍ୟରେ ଜୁଲାଇ ୬ତାରିଖ ଟାଉନ୍ ହଲ୍‌ଠାରେ ଏହି ସମ୍ମିଳନୀ ଅନୁଷ୍ଠିତ ହେବ ।

ଆରମ୍ଭ ହେଲା ପ୍ରସ୍ତୁତି ପର୍ବ । ସେତେବେଳେ ଏକ ବିରାଟ ସମସ୍ୟା-ବିବାହ ତିଥିରେ ଉତ୍ସବ ମୁଖର ଯାଜପୁର ସହର । ତା ଛଡା ବର୍ଷା ଋତୁର ଆଗମନ ଫଳରେ ଘନଘନ ବର୍ଷାର ଫୁଆରା । ଟାଉନ୍‌ହଲ୍ ବୁକିଂ, ବ୍ୟାନର ଲେଖା, ଡାକବାଜି ଯନ୍ତ୍ର, କାର୍ଡ ବାଣ୍ଟିବା କାର୍ଯ୍ୟସହ ଅର୍ଥ ସଂଗ୍ରହ କରିବା ଆଦି କାର୍ଯ୍ୟ ମତେ ଏକା ଏକା କରିବାକୁ ପଡିଥିଲା । ଅବଶ୍ୟ ମାନସିକ ସ୍ତରରେ ମତେ କେତେକ ସାହିତ୍ୟିକବନ୍ଧୁ ସହଯୋଗ କରିଥିଲେ । ଜୁଲାଇ ଛଅ ତାରିଖ ରବିବାର ପୂର୍ବାହ୍ନ ୧୦ ଘଟିକା ସମୟରେ ଆରମ୍ଭ ହେବ ସମ୍ମିନଳୀ । ମୁଖ୍ୟ ଅତିଥି ଔପନ୍ୟାସିକା ଡଃ. ପ୍ରତିଭା ରାୟ, ବରେଣ୍ୟ ଅତିଥି ରୂପେ ବିଶିଷ୍ଟ ସମାଲୋଚକ ପ୍ରଫୁଲ୍ଲ କୁମାର ମହାନ୍ତି । କବିତା ପାଠୋତ୍ସବର ଅତିଥି କବି ବ୍ରଜନାଥ ରଥ, ସଂଯୋଜକ ରୂପରେ ଅଧ୍ୟାପକ ଦିଲ୍ଲୀପ ସ୍ୱାଇଁ ଓ ଅଧ୍ୟାପକ ସନ୍ତୋଷ ସାମଲ ଯୋଗଦେବେ । ସମ୍ମିଳନୀରେ ଅଧ୍ୟକ୍ଷତା କରିବେ ଜିଲ୍ଲା ପରିଷଦର ଅଧ୍ୟକ୍ଷ ଗୌତମ ରାୟ । ଜନସେବା ଆୟୋଗରେ ବିଶେଷ ଦାୟିତ୍ୱ ହେତୁ ଶ୍ରୀମତୀ ରାୟ ସଭାରେ ଶେଷ ମୁହୂର୍ତ୍ତରେ ଯୋଗ ଦେଇ ପାରିବେ ନାହିଁ ବୋଲି ଜଣାଇଲେ ।



ଯାଜପୁର ଟାଉନ୍‌ହଲରେ ପୂର୍ବ ପ୍ରସ୍ତୁତି ଚାଲିଥିବା ବେଳେ ଉତ୍ସବର ଚାରିଘଣ୍ଟା ପୂର୍ବରୁ ଆରମ୍ଭ ହୋଇଗଲା ବର୍ଷା । ଏମିତି ବର୍ଷାହେଲା ଯେ, ଯାଜପୁରର ସମସ୍ତ ସାହିତ୍ୟ ପ୍ରେମୀଙ୍କ ମନରେ ସୃଷ୍ଟିହେଲା ଅଜସ୍ର ପ୍ରଶ୍ନବାଚୀ? କେମିତି ହେବ 'ଇସ୍ତାହାର'ର ରଜତ ଜୟନ୍ତୀ ସମାରୋହ? କବିବନ୍ଧୁମାନେ

ଦୂରଦୂରାନ୍ତରୁ ଆସି ସଭାସ୍ଥଳୀରେ ଉପସ୍ଥିତ ହେବେ କେମିତି ? ଏମିତି ଅନେକ ପ୍ରଶ୍ନ । ପ୍ରବଳ ବର୍ଷା ସତ୍ତ୍ୱେ ମୁଁ ମୋର କାର୍ଯ୍ୟ କରିଚାଲିଥାଏ । କେତେଜଣ ସହକର୍ମୀଙ୍କ ସହ ଟାଉନ୍‌ହଲ୍ ଝଡା ଝଡି, ମଞ୍ଚ ପ୍ରସ୍ତୁତି ଆଦି କାର୍ଯ୍ୟ ସମାପନ ପରେ ସୁଦୂର ରାଉରକେଲା , ପାରାଦୀପ , ଭୁବନେଶ୍ୱର , କେନ୍ଦ୍ରାପଡା , ବାଲେଶ୍ୱର , ଭଦ୍ରକ , କଟକ ଓ ଜଗତ୍‌ସିଂହପୁର ଆଦିରୁ ବହୁ କବି ଆସି ଉପସ୍ଥିତ ହୋଇଥିଲେ । ସଭାକାର୍ଯ୍ୟ ଆରମ୍ଭ ହେଲା । ଅଭୂତପୂର୍ବ ସଫଳତା ସହ ଶେଷ ହେଲା । ସଭାସଂପର୍କରେ ସମ୍ୟକ ସୂଚନା ଦେବା ନିମନ୍ତେ 'ସମାଜ' ଓ 'ସମ୍ବାଦ'ରେ ପ୍ରକାଶିତ ସମ୍ବାଦକୁ ଅବିକଳ ଏଠାରେ ଉଦ୍ଧାର କରାଗଲା ।

**ସମାଜ - ୨୨ ଜୁଲାଇ ୨୦୦୩**

**'ଇସ୍ତାହାର'ର ରଜତ ଜୟନ୍ତୀ ଉତ୍ସବ**

**'ସମ୍ବାଦ' ୯ ଜୁଲାଇ ୨୦୦୩**

**ଇସ୍ତାହାର ର ରଜତ ଜୟନ୍ତୀ**

ଅକ୍ଟୋବର ୨୫ରେ ଇସ୍ତାହାର ରଜତଜୟନ୍ତୀ ଉଦ୍‌ଯାପନ ଉତ୍ସବ ଭୁବନେଶ୍ୱର ସୂଚନା ଭବନଠାରେ ପାଳିତ ହେବ । ଏହି ଅବକାଶରେ ରଜତ ଜୟନ୍ତୀ ସମ୍ମାନ ସମାଲୋଚକ ଚିନ୍ତାମଣି ବେହେରା ଓ ଗାଳ୍ପିକ ଅଚ୍ୟୁତାନନ୍ଦ ପତିଙ୍କୁ ପ୍ରଦାନ କରାଯିବ । 'ଇସ୍ତାହାର' ପକ୍ଷରୁ ସାରସ୍ୱତ ପୁରସ୍କାର (ପ୍ରତ୍ୟେକଙ୍କୁ ପଞ୍ଚଦଶ ସହସ୍ର ମୁଦ୍ରା) ପାଇବେ ସମାଲୋଚକ ଡଃ. ଗଗନେନ୍ଦ୍ର ନାଥ ଦାସ, କବି ନୃସିଂହ ପ୍ରସାଦ ତ୍ରିପାଠୀ ଓ ଗାଳ୍ପିକ ରବି ସ୍ୱାଇଁ । ଏହି ସୂଚନା ନିଶ୍ଚିତ ରୂପେ ସଭିଙ୍କୁ ଆନନ୍ଦ ଆଣିଦେଲା । କିନ୍ତୁ 'ଇସ୍ତାହାର-୯୦' ଶାରଦୀୟ ବିଶେଷାଙ୍କର ସଂପାଦକୀୟ ପାଠ କରିବା ପରେ ଆଖିରୁ ଲୁହ ଝରି ଆସିଲା । ଦୀର୍ଘ ପଚିଶ ବର୍ଷ ଧରି ଯେଉଁ ଦାୟିତ୍ୱକୁ ବରେଣ୍ୟ ସଂପାଦକ ପ୍ରଫେସର ନିତ୍ୟାନନ୍ଦ ଶତପଥୀ ସଫଳତାର ସହ ତୁଲାଇ ଆସିଥିଲେ ସେଥିରୁ ଅବ୍ୟାହତି ନେବା ଘୋର ଦୁଃଖର ବିଷୟ । ତାଙ୍କ ଦାୟିତ୍ୱ କେଉଁ ଅନଭିଜ୍ଞ ତୁଲାଇବାକୁ ସମର୍ଥ କି ଅସମର୍ଥ ହେବ ତାହା ପୂର୍ବରୁ ସଂପାଦକ ମହୋଦୟ ତାଙ୍କର ସୂଚନାକୁ ପରିହାର କରି ପୁନର୍ବାର 'ଇସ୍ତା
ହାର' ପରି ସମ୍ଭ୍ରାନ୍ତ ପତ୍ରିକାର ଦାୟିତ୍ୱ ତୁଲାଇବାକୁ ଯାଜପୁରର 'ସବୁଜ ସାହିତ୍ୟ ସଂସଦ' ପକ୍ଷରୁ ଅନୁରୋଧ କରାଯାଇଛି ।

ଏହି ଅବକାଶରେ 'ଇସ୍ତାହାର' ରଜତ ଜୟନ୍ତୀ ଉଦ୍‌ଯାପନୀ ଉତ୍ସବର ସଫଳତା କାମନା କରୁଛୁ ।

ସଂପାଦକ, ସବୁଜ ସାହିତ୍ୟ ସଂସଦ, ଯାଜପୁର

# ଏବଂ ଶେଷ ବକ୍ତବ୍ୟ :

ଏହା 'ଇସ୍ତାହାର୍' ରଜତ ଜୟନ୍ତୀ ସଂପର୍କରେ କେତୋଟି ସୂଚନା ମାତ୍ର । ଇସ୍ତାହାର ରଜତ ଜୟନ୍ତୀର ଶୁଭାରମ୍ଭ ହୋଇଥିଲା ପୁଣ୍ୟାତ୍ମା ଫକୀରମୋହନଙ୍କ ଜନ୍ମ ତିଥିରେ (ତା ୧୪ ଜାନୁୟାରୀ) ପାରାଦ୍ୱୀପ ବନ୍ଦରାଞ୍ଚଳରେ। ମୁଖ୍ୟ ଅତିଥି ଭାବେ ଯୋଗ ଦେଇଥିଲେ ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ ସୁସାହିତ୍ୟିକ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ। ବରେଣ୍ୟ ଅତିଥି ଭାବେ ବିଖ୍ୟାତ ଔପନ୍ୟାସିକ ଶ୍ରୀ ଶାନ୍ତନୁ କୁମାର ଆଚାର୍ଯ୍ୟ ଓ ସଭାପତି ଭାବେ ଜ୍ଞାନପୀଠ ପୁରସ୍କାର ବିଜେତା କବି ସୀତାକାନ୍ତ ମହାପାତ୍ର ଏହି ସାରସ୍ୱତ ଉତ୍ସବରେ ଉଦ୍‌ବୋଧନ ଦେଇଥିଲେ ।



**[ ଅତିଥିବୃନ୍ଦ ଦ୍ୱୀପାୟନ କରି ଉତ୍ସବକୁ ଉଦ୍‌ଘାଟନ କରୁଛନ୍ତି । ସ୍ଥାନ-ପାରାଦୀପ ବନ୍ଦର କର୍ମଚାରୀ ବିନୋଦନ କେନ୍ଦ୍ର]**



**[ ମଚରେ ବସିଛନ୍ତି ଦକ୍ଷିଣରୁ ବାମକୁ ପ୍ରଫେସର ଶତପଥୀ, ଶ୍ରୀ ଶାନ୍ତନୁକୁମାର ଆଚାର୍ଯ୍ୟ, ପୂର୍ବତନ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ, ଶ୍ରୀ ସୀତାକାନ୍ତ ମହାପାତ୍ର, ଶ୍ରୀମତୀ ଅନିମା ଦାଶ ଓ ଠିଆ ହୋଇଛନ୍ତି ଶ୍ରୀ ହୃଷୀକେଶ ମଲ୍ଲିକ ।]**

'ଇସ୍ତାହାର୍'ର ସଂପାଦକ ଅତିଥିମାନଙ୍କ ପରିଚୟ ପ୍ରଦାନ ଓ 'ଇସ୍ତାହାର୍' ଜନ୍ମର ଇତିହାସ ସଂପର୍କରେ ସୂଚନା ଦେବାପରେ ଅଭ୍ୟର୍ଥନା ସମିତିର ସଭାନେତ୍ରୀ ଅତିଥିମାନଙ୍କୁ ଓ ଉପସ୍ଥିତ ସାହିତ୍ୟିକମାନଙ୍କୁ ସ୍ୱାଗତ ଜଣାଇଥିଲେ ।

ମୁଖ୍ୟଅତିଥି ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ 'ଇସ୍ତାହାର' ରଜତ ଜୟନ୍ତୀ ବିଶେଷ ସଂଖ୍ୟା ଉନ୍ମୋଚନ କରି 'ଇସ୍ତାହାର'ର ଓଡ଼ିଆ ସାହିତ୍ୟିକୁ ଅବଦାନ ସଂପର୍କରେ ସୂଚନା ଦେବା ସହ ଏହାର ଦୀର୍ଘଜୀବନ କାମନା କରିଥିଲେ। ଅନ୍ୟତମ ବରେଣ୍ୟ ଅତିଥି ଶ୍ରୀ ଶାନ୍ତନୁ କୁମାର ଆଚାର୍ଯ୍ୟ ଓଡ଼ିଆ କାବ୍ୟ କବିତାର ଅବବୋଧ ପାଇଁ 'ଇସ୍ତାହାର'ର ନିୟତ ଉଦ୍ୟମ ସଂପର୍କରେ ସୂଚନା ଦେଇ ନୂତନ ପିଢ଼ିର ଲେଖକମାନଙ୍କୁ ଲୋକଲୋଚନକୁ ଆଣିବାରେ 'ଇସ୍ତାହାର'ର ଭୂମିକା ଓ ଆଧୁନିକ ସାହିତ୍ୟ ପାଇଁ ଏହାର ଅବଦାନ ସଂପର୍କରେ ସୂଚନା ଦେଇ ବହୁ ଲେଖକଙ୍କ ନାମ ଉଚ୍ଚାରଣ କରିଥିଲେ। 'ଇସ୍ତାହାର' ସଂପାଦକଙ୍କ ବିଷାଦୋକ୍ତି ବିଷୟରେ କହିବାକୁ ଯାଇ ସେ ଓଡ଼ିଆ ପାଠକମାନଙ୍କ ଉଦାସୀନତା ବିଷୟରେ ଓ ଅଧ୍ୟାପକଙ୍କର ସାହିତ୍ୟପ୍ରତି ଅନାଦର ସଂପର୍କରେ ମତବ୍ୟକ୍ତ କରିଥିଲେ। ସଭାପତି ଡକ୍ଟର ମହାପାତ୍ର 'ଇସ୍ତାହାର' ପତ୍ରିକାକୁ ଏକ ଐତିହାସିକ ପଦକ୍ଷେପ ଭାବେ ଚିହ୍ନିତ କରି ଓଡ଼ିଆ ସାହିତ୍ୟ ପାଇଁ ଏ ପତ୍ରିକାର ଅନନ୍ୟ ଅବଦାନ ସଂପର୍କରେ ସୂଚନା ଦେଇଥିଲେ। ଏହି ଧରଣର ଦେଶବିଦେଶର ପତ୍ରିକାମାନଙ୍କ ତୁଳନୀୟ ଚିତ୍ର ପ୍ରଦାନ କରିଥିଲେ।

ଅପରାହ୍ଣ ଅଧିବେଶନ ପରେ କବି ଶ୍ରୀ ଦୀପକ ମିଶ୍ରଙ୍କ ସଭାପତିତ୍ୱରେ ଏକ କବିତା ପାଠୋତ୍ସବ ଅନୁଷ୍ଠିତ ହୋଇଥିଲା। ସଂଯୋଜନା କରିଥିଲେ କବି ଅପର୍ଣ୍ଣା ମହାନ୍ତି ଓ କବି ଗୀତାଶ୍ରୀ ପ୍ରିୟମ୍ବଦା। ପ୍ରାୟ ପଚିଶ ଜଣ କବି ସେମାନଙ୍କ କବିତା ପାଠ କରି ଥିଲେ। ଶ୍ରୀ ମିଶ୍ର ଏକ ଆବେଗପୂର୍ଣ୍ଣ ଭାଷଣ ପ୍ରଦାନ କରିଥିଲେ।

'ଇସ୍ତାହାର'ର ଦ୍ୱିତୀୟ ରଜତ ଜୟନ୍ତୀ ଉତ୍ସବ ଅନୁଷ୍ଠିତ ହୋଇଥିଲା ରାଉରକେଲାସ୍ଥ ଭଂଜମଣ୍ଡପରେ। ଏପ୍ରିଲ୍ ୧୪ ତାରିଖରେ ଅନୁଷ୍ଠିତ ଏହି ସମାରୋହରେ ସଭାପତିତ୍ୱ କରିଥିଲେ ଶ୍ରୀ ଭାରତ ମହାନ୍ତି। ଅଭ୍ୟର୍ଥନା ସମିତିର ସଂପାଦକ ଶ୍ରୀ ଭୂପେନ ମହାପାତ୍ର ସ୍ୱାଗତ ଭାଷଣ ପ୍ରଦାନ କରି 'ଇସ୍ତାହାର'କୁ ଓଡ଼ିଆ ଭାଷା ସାହିତ୍ୟର ଦିଗ୍‌ବାରେଣୀ ରୂପେ କାମ କରୁଥିବା ଅନ୍ୟତମ ସଂଭ୍ରାନ୍ତ ସାହିତ୍ୟ ପତ୍ରିକା ଭାବେ ନାମିତ କରିଥିଲେ। ମୁଖ୍ୟଅତିଥି ଡକ୍ଟର ଦୀନନାଥ ପାଠୀ ଏକ ଲିଖିତ ବକ୍ତବ୍ୟରେ ଓଡ଼ିଶାର ଚିତ୍ରକଳା ଓ ତା'ର ଆନ୍ତର୍ଜାତିକ ସ୍ୱୀକୃତି ପାଇଁ ଓଡ଼ିଆମାନଙ୍କର ଉଦାସୀନତା ସଂପର୍କରେ କ୍ଷୋଭ ପ୍ରକାଶ କରିଥିଲେ। 'ଇସ୍ତାହାର' ଏକ ନିର୍ଦ୍ଦିଷ୍ଟ ସାହିତ୍ୟିକ ଆଭିମୁଖ୍ୟରେ ପଚିଶବର୍ଷ ଧରି ଓଡ଼ିଆ ସାହିତ୍ୟରେ ଏକ ଭିନ୍ନ ରୁଚିର ପତ୍ରିକାଭାବେ ନିଜର ଅସପତ୍ନ ପ୍ରଭାବ ଓ ଅବିମିଶ୍ର ମତବାଦ ସ୍ଥାପନ କରିପାରିଛି ବୋଲି ସେ ଆଶ୍ୱାସନା ପ୍ରକାଶ କରିଥିଲେ। ସଂପାଦକ ପ୍ରଫେସର ଶତପଥୀ 'ଇସ୍ତାହାର'କୁ ଏକ ନିଭିନିଭି ଯାଉଥିବା ଦୀପଶିଖା ଭାବେ ବର୍ଣ୍ଣନା କରି ଏହାକୁ ପ୍ରତିଷ୍ଠା ଦେବାରେ ସେ ଅଙ୍ଗେ ନିଭାଉଥିବା ଦୁରୂହ ସମସ୍ୟାଗୁଡ଼ିକ ସଂପର୍କରେ ସୂଚନା ଦେଇଥିଲେ। ଅପରାହ୍ଣରେ ଏକ ଅଭିନବ ଗଳ୍ପ ପାଠୋତ୍ସବର ଆୟୋଜନ କରାଯାଇଥିଲା। ଏଥିରେ 'ଇସ୍ତାହାର'ର ସହଯୋଗୀ ସଂପାଦକ ଆଡ୍‌ଭୋକେଟ୍ ଚନ୍ଦ୍ରକୁମାର ମହାନ୍ତି ପୌରୋହିତ୍ୟ କରିଥିଲେ। ଶ୍ରୀ ବିଷ୍ଣୁ ସାହୁ, ଶ୍ରୀ ପ୍ରଦୋଷ ମିଶ୍ର, ଶ୍ରୀ ସଦାନନ୍ଦ ତ୍ରିପାଠୀ, ଡାକ୍ତର ସଂଜୟ କୁମାର ଶତପଥୀ, ଶ୍ରୀମତୀ ପ୍ରମିଳା ପାଢ଼ୀ, ଶ୍ରୀ କ୍ଷୀରୋଦ ଦାସ ଓ ଶ୍ରୀ ପ୍ରକାଶ ମହାପାତ୍ର ସେମାନଙ୍କ ଗଳ୍ପ ପାଠ କରିଥିଲେ। ସହଯୋଗୀ ସଂପାଦକ ଶ୍ରୀ କ୍ଷୀରୋଦ ଦାସ ସଂଯୋଜନା କରିଥିଲେ। ଅଭ୍ୟର୍ଥନା ସମିତିର ସଭାପତି ଶ୍ରୀ ଭାରତ ମହାନ୍ତି ସମବେତ ସାହିତ୍ୟିକମାନଙ୍କ ପାଇଁ ମଧ୍ୟାହ୍ନ ଭୋଜନର ବ୍ୟବସ୍ଥା କରିଥିଲେ।

'ଇସ୍ତାହାର'ର ତୃତୀୟ ରଜତ ଜୟନ୍ତୀ ଉତ୍ସବ ଯାଜପୁର ସହର ସଭାକକ୍ଷରେ ଜୁଲାଇ ୬ ତାରିଖ ପୂର୍ବାହ୍ଣରେ ଅନୁଷ୍ଠିତ ହୋଇଥିଲା। ଏହାର ବିବରଣୀ ଅଭ୍ୟର୍ଥନା ସମିତିର ସଂପାଦକ ଶ୍ରୀ ରମେଶ ପତି ବିସ୍ତୃତ ଭାବେ ବର୍ଣ୍ଣନା କରିଛନ୍ତି। ଜିଲାପରିଷଦର ସଭାପତି ଶ୍ରୀ ଗୌତମରାୟଙ୍କ ବଦାନ୍ୟତା ଓ ସହଯୋଗ 'ଇସ୍ତାହାର' ପାଇଁ ସବୁଦିନେ ସ୍ମରଣୀୟ ହୋଇ ରହିବ। ଏଠାରେ ସୁଦୂର ରାଉରକେଲାରୁ କବି ସନ୍ତୋଷ ରଥ, ସତ୍ୟବ୍ରତ ଦାଶ, ପରେଶ ବିଶ୍ୱାଳ, ସନତ୍ ରାୟ ଯେ ନିଜନିଜର ଆଗ୍ରହରେ ଆସି ଯୋଗ ଦେଇପାରିଥିଲେ ତାହା ଆମମାନଙ୍କୁ ଅଭିଭୂତ କରିଥିଲା। ଡକ୍ଟର ପ୍ରଫୁଲ୍ଲ କୁମାର ମହାନ୍ତି, ଶ୍ରୀ ବ୍ରଜେନାଥ ରଥ ଅତିଥି ଭାବେ ଯୋଗ ଦେଇ ସେମାନଙ୍କର ବକ୍ତବ୍ୟରେ 'ଇସ୍ତାହାର'ର ପଚିଶବର୍ଷର ପଥଶ୍ରାନ୍ତି ଓ ଦାୟବଦ୍ଧ ନେତୃତ୍ୱ ସଂପର୍କରେ ଉଚ୍ଛ୍ୱସିତ ପ୍ରଶଂସା କରିଥିଲେ।

'ଇସ୍ତାହାର' ରଜତ ଜୟନ୍ତୀର ଉଦ୍‌ଯାପନ ଉତ୍ସବ ରାଜଧାନୀର ଜୟଦେବ ଭବନରେ ଆଜି ଅନୁଷ୍ଠିତ ହେଉଛି। ମୁଖ୍ୟଅତିଥି ଶ୍ରୀ ବ୍ରଜକିଶୋର ତ୍ରିପାଠୀ ରାଉରକେଲା ସମାରୋହରେ ଯୋଗ ଦେଇ ନପାରି ଆମକୁ ଉଦ୍‌ଯାପନ ଉତ୍ସବରେ ଯୋଗଦେବେ ବୋଲି ପ୍ରତିଶ୍ରୁତି ଦେଇଥିଲେ। ତାହା ସେ ରକ୍ଷା କରିଥିବାରୁ ସଂପାଦନାମଣ୍ଡଳୀ ତାଙ୍କ ପାଖରେ କୃତଜ୍ଞ। ଗୁରୁଣାଂଗୁରୁ ପୂର୍ବତନ କୁଳପତି ଡକ୍ଟର ମନ୍ମଥନାଥ ଦାସ ଏକ ମହାନ୍ ମହୀରୁହ। ତାଙ୍କ କୃତିତ୍ୱ ଓଡ଼ିଶା ଠାରୁ ଭାରତର ରାଜଧାନୀ ପର୍ଯ୍ୟନ୍ତ ପରିବ୍ୟାପ୍ତ। ଜଣେ ବିଶ୍ୱବିଦ୍ୟାଳୟ ପ୍ରଫେସର ଭାବେ ସେ ପ୍ରଥମଥର ପାଇଁ ଓଡ଼ିଶାରୁ ରାଜ୍ୟସଭାକୁ ନିର୍ବାଚିତ ହୋଇଛନ୍ତି। ଏ ଉତ୍ସବରେ ଯୋଗ ଦେବାକୁ ତାଙ୍କ ସ୍ୱୀକୃତି ଆମକୁ ପ୍ରକୃତରେ ଆନନ୍ଦିତ କରିଛି। ସେହିପରି କର୍ମବ୍ୟସ୍ତ ଓ ଓଡ଼ିଶାର ଗୌରବ ପ୍ରତିଷ୍ଠା ପାଇଁ ସର୍ବଦା ତତ୍ପର 'ସମ୍ବାଦ' ଦୈନିକୀର ସଂପାଦକ ସୌମ୍ୟରଂଜନ ପଟ୍ଟନାୟକ ରଜତ ଜୟନ୍ତୀ ଉତ୍ସବରେ ବରାବର ସହଯୋଗ କରି ଆସିଛନ୍ତି। ସମ୍ଭବତଃ ନିଜେ ପତ୍ରପତ୍ରିକାର ସଂପାଦକ ଭାବେ ଆଉ ଜଣେ ସଂପାଦକର ବ୍ୟଥା ଓ ବେଦନାକୁ ସେ ସବୁବେଳେ ଉପଲବ୍ଧି କରି ପାରିଛନ୍ତି। ତାଙ୍କ ଉପସ୍ଥିତି ଆମକୁ ଉଲ୍ଲସିତ କରିଛି। ସର୍ବୋପରି ଓଡ଼ିଶାର ବରେଣ୍ୟ କବି ସରସ୍ୱତୀ ସମ୍ମାନର ବିରଳ ଅଧିକାରୀ କବି ରମାକାନ୍ତ ରଥ କେବଳ ଓଡ଼ିଶା ନୁହେଁ ଭାରତର ବିଦ୍ୱାନ ଓ ସାହିତ୍ୟିକ ମହଲରେ ଆଜି ଖୁବ୍ ବେଶୀ ଜଣାଶୁଣା। କେନ୍ଦ୍ର ସାହିତ୍ୟ ଏକାଡେମୀର ପ୍ରଥମ ଓଡ଼ିଆ ସଭାପତି ଭାବେ ସେ ଓଡ଼ିଶା ପାଇଁ ଖୁବ୍ ବଡ଼ ସମ୍ମାନର ଅଧିକାରୀ। ସେ ଆଜିର ଉଦ୍‌ଯାପନୀ ସମାରୋହରେ ସଭାପତିତ୍ୱ କରୁଥିବାରୁ ଆମେ ଖୁବ୍ ଗୌରବାନ୍ୱିତ।

ରଜତ ଜୟନ୍ତୀ ଉତ୍ସବରେ ପୁରସ୍କାର ଦେବା ପରିକଳ୍ପନା ନୂଆ ନ ହେଲେ ବି ଏକ ତ୍ରୈମାସିକ ପତ୍ରିକା ପାଇଁ ନିଶ୍ଚୟ ଏକ ଅଭିନବ ଅନୁଭୂତି। ଯେଉଁ ସମାଲୋଚକ, କବି ଓ ଗାଳ୍ପିକମାନେ ଓଡ଼ିଆ ସାହିତ୍ୟକୁ କ୍ରମାଗତ ଭାବେ ନିଜର ଅବଦାନରେ ସମୃଦ୍ଧ କରି ଆସିଛନ୍ତି ଅଥଚ କୌଣସି ଆଶାନୁରୂପ ସ୍ୱୀକୃତି ଏ ଯାବତ୍ ପାଇ ନାହାନ୍ତି, 'ଇସ୍ତାହାର'ରେ ଏହାର ଆରମ୍ଭ କାଳରୁ ଲେଖି ଆସିଛନ୍ତି, ସେହିପରି ତିନିଜଣ ବିଶିଷ୍ଟ ସାଧକଙ୍କୁ ଇସ୍ତାହାର ପୁରସ୍କାର ଦେବାପାଇଁ ସଂପାଦନା ମଣ୍ଡଳୀ ସ୍ଥିର କରିଥିଲେ। ଆମ୍ଭମାନଙ୍କ ଅନୁରୋଧ କ୍ରମେ ବାଲେଶ୍ୱରର ବିଶିଷ୍ଟ ଶିଳ୍ପପତି ଶ୍ରୀ ହିମାଂଶୁ ଦାସ (ORIPLAST) ଭୁବନେଶ୍ୱରର ଇମ୍‌ଫା ଶିଳ୍ପଉଦ୍ୟୋଗ ଦାତବ୍ୟ ଟ୍ରଷ୍ଟର ସଭାନେତ୍ରୀ ଶ୍ରୀମତୀ ଇଲା ପଂଡା ଓ ତରୁଣ ଶିଳ୍ପଉଦ୍ୟୋଗୀ ବି. ଇଂଜିନିୟର୍ସର ପରିଚାଳନା ମୁଖ୍ୟ ଶ୍ରୀ ତୁଷାର ମିଶ୍ର ତିନୋଟି ମୂଲ୍ୟବାନ ପୁରସ୍କାରର ଆର୍ଥିକ ଭାର ବହନ କରିବାକୁ ବିନା ଦ୍ୱିଧାରେ ସମ୍ମତି ଦେଇ ଆମକୁ କୃତଜ୍ଞତା ପାଶରେ ଆବଦ୍ଧ କରିଦେଲେ। ସହଜେ ଇମ୍‌ଫା ସଂସ୍ଥା ଓଡ଼ିଶାର ଗୌରବାବହ 'ଶାରଳା ପୁରସ୍କାର'ର ପ୍ରତିଷ୍ଠାତା ଭାବେ ସବୁଦିନେ ସ୍ମରଣୀୟ ରହିବେ। ଏହିପରି ସାହିତ୍ୟ-ସଂସ୍କୃତିମୂଳକ କାର୍ଯ୍ୟକ୍ରମରେ ସେମାନେ ଆନ୍ତରିକତାର ସହିତ ସହଯୋଗ କରି ଓଡ଼ିଶାରେ ଅଗ୍ରଗାମୀ ନେତୃତ୍ୱ ନିଅନ୍ତୁ-ଏହାହିଁ ଆମର କାମନା।

ଆମେ ଅନୁଭବ କରୁଛୁ 'ଇସ୍ତାହାର'ର ଗତ ପୂଜାସଂଖ୍ୟା ସଂପାଦକୀୟରେ 'ଇସ୍ତାହାର' ବନ୍ଦ ହୋଇ ଯାଉଥିବାର ବାର୍ତ୍ତା ଶୁଣି ଓଡ଼ିଶାର ବହୁ ସତ୍-ସାହିତ୍ୟିକ ଓ ଅନୁରାଗୀ ପାଠକ ମର୍ମବେଦନା ଅନୁଭବ କରୁଛନ୍ତି। ବହୁ ପରିମାଣରେ ଟେଲିଫୋନ୍ ବାର୍ତ୍ତା ଓ ଚିଠି ପାଇ ଆମେ ଅଭିଭୂତ। ତେବେ 'ଇସ୍ତାହର'ର ସଂପାଦନା ଓ ପରିଚାଳନା ଦାୟିତ୍ୱ ବହନ କରିବାକୁ କେହି ଆଗେଇ ଆସିଲେ ଆମେ ନିଶ୍ଚିତଭାବେ ତାଙ୍କ ହାତରେ ଏ ଗୁରୁ ଦାୟିତ୍ୱ ଟେକିଦେବୁ। ଆଜି ଏଠାରେ ଉପସ୍ଥିତ ସାହିତ୍ୟିକ, ସାମ୍ବାଦିକ, ଅଧ୍ୟାପକ, ଛାତ୍ର ଓ ପାଠକ ପାଠିକାମାନଙ୍କୁ ଆମେ କୃତଜ୍ଞତା ଜଣାଇ ରଜତ ଜୟନ୍ତୀର ଉଦ୍‌ଯାପନ ଘୋଷଣା କରୁଛୁ।

ପାରାଦ୍ୱୀପ ଅଧିବେଶନରେ ବନ୍ଦରର ସାଂସ୍କୃତିକ ସଂସ୍ଥା 'ଜଗନ୍ନାଥ ଲଳିତକଳା ସଂସଦ' ରାଉରକେଲା ଅଧିବେଶନରେ 'ଭଂଜକଳା ପରିଷଦ' ଓ ଯାଜପୁର ଅଧିବେଶନରେ 'ସବୁଜ ସାହିତ୍ୟ ସଂସଦ' ଆମ ସହିତ ସହଯୋଗିତା କରି ସଭା ଆୟୋଜନ ଓ ପରିଚାଳନାରେ ବିଶିଷ୍ଟ ଅଂଶ ବହନ କରିଥିବାରୁ ଆମେ ଏହି ଅନୁଷ୍ଠାନ ମାନଙ୍କୁ କୃତଜ୍ଞତା ଜଣାଉଛୁ।

– ସଂପାଦନା ମଣ୍ଡଳୀ, 'ଇସ୍ତାହାର'

ଭୁବନେଶ୍ୱର, ତା ୨୫.୧୦.୦୩



[୨୯ ଜାନୁଆରୀ ୨୦୦୨ରେ 'ଇସ୍ତାହାର'ର ବାଲେଶ୍ୱର ବିଶେଷାଙ୍କ ଉଦ୍‌ଘାଟନ କରୁଛନ୍ତି କୁଳପତି ଡଃ କରୁଣାସାଗର ବେହେରା । ପାଖରେ ଠିଆ ହୋଇଛନ୍ତି ସଂପାଦକ ପ୍ରଫେସର ଶତପଥୀ, କବି ବ୍ରଜନାଥ ରଥ ଓ ସହଯୋଗୀ ସଂପାଦକ ଶ୍ରୀ ଚନ୍ଦ୍ରକୁମାର ମହାନ୍ତି । ସ୍ଥାନ- ବାଲେଶ୍ୱର ଟାଉନ୍ ହଲ୍]

**'ଇସ୍ତାହାର' ସଂପାଦନା ମଣ୍ଡଳୀ :**

ସଂପାଦକ-ପ୍ରଫେସର ନିତ୍ୟାନନ୍ଦ ଶତପଥୀ

ସହଯୋଗୀ ସଂପାଦକ-

ଶ୍ରୀ ଚନ୍ଦ୍ରକୁମାର ମହାନ୍ତି

ଶ୍ରୀ କ୍ଷୀରୋଦ ଦାସ

ଯୋଗାଯୋଗ :

ଡୁପ୍ଲେକ୍ସ-୯, ଶୈଳଶ୍ରୀବିହାର, ଭୁବନେଶ୍ୱର-୨୧

ଦୂରଭାଷ - ୨୭୪୩୭୫୮

Give your construction the solid foundations of SAIL steel.

**TMT Bars and Light Structural Steels from SAIL**






*SAIL offers you the widest range of world-class steel products for construction purposes, with special reinforced gardes for marine/ underground enviornments. Add to that the SAIL assurance of effecient service and timely delivery, and you have a winning edge no one can match.*



**STEEL AUTHORITY OF INDIA LIMITED**

Regd. Office : Ispat Bhavan, Lodi Road, New Delhi-110 003